"୩୬୫ ଦିନ" ପୁସ୍ତକମାଳା

# ଜୀବନ ତିଆରି କାରଖାନା



ବିନୋଦ କାନୁନ୍‌ଗୋ

# ଜୀବନ ତିଆରି
# କାରଖାନା

ଲେଖକ :
**ବିନୋଦ କାନୁନ୍‌ଗୋ**

ପ୍ରକାଶକ :
**ଜ୍ଞାନମଣ୍ଡଳ ପ୍ରକାଶନୀ**
ବାରବାଟୀ ଷ୍ଟେଡ଼ିୟମ୍
କଟକ-୭୫୩ ୦୦୫

ଦ୍ୱିତୀୟ ମୁଦ୍ରଣ :
ତା ୧୫-୨-୮୦

[redacted]

ମୁଦ୍ରାକର :
**ପରମହଂସ ପ୍ରେସ**
ମହମଦିଆ ବଜାର, କଟକ-୭୫୩୦୦୨

JEEBANATIARI KARAKHANA

*Writer :*
BINODE KANUNGO

*Publisher :*
JNANMANDAL PRAKASHANI
Barabati Stadium, Cuttack-753005

ଜୀବନ ତଆର········

## କାରଖାନା·········

**ଜାନୁୟାରୀ ଚଉଦ ତାରିଖ**—ଶମ୍ବର ଦଶମୀ ପଡ଼ିଛି । ସେଦିନ ଗରିବ ଘରଟିଏ ହେଉପଛକେ ଦୁଇଗୁର ରକମର କିଛି ନା କିଛି ତିଆର ହୋଇଥିବ । ଯିଏ ଏହି ଦିନଟିକୁ ବାହାର କରିଥିଲେ, ପିଲାମାନେ ତାଙ୍କୁ ବେଶ୍ ବାହା ବାହା କରନ୍ତି । ଯାହାଙ୍କ ଘରେ ବହୁତ ଲୋକ, ତାଙ୍କ ଘର ପିଲାଙ୍କର ବେଶୀ ଆନନ୍ଦ ।

ଆନନ୍ଦର କାରଣ ହେଉଛି ସମସ୍ତଙ୍କ ଉଦ୍ଦେଶ୍ୟରେ ଗୋଟାଏ ନା ଗୋଟାଏ କିସମର ପିଠା, ମିଠାଇ ବା ଆଉ କିଛି ତିଆରି ହୋଇଥାଏ । ସବୁତକ ଗୋଟାଏ ସ୍ଥାନରେ ରଖି ଭୋଗ ବଢ଼ାହୁଏ । ମା'ଆମାନେ ପ୍ରତି ପିଲାଙ୍କ ପାଇଁ ତ ଗୋଟାଏ ନା ଗୋଟାଏ କିଛି "ମାନସିକ" କରି ଥାଆନ୍ତି । ଯାହାର ଯେଉଁଟି ହେଲା ଅତି ପ୍ରିୟ, ତାହା ପାଇଁ ସେହି ଟେ ଟିକ ତିଆରି ହୋଇଥାଏ । ଟୁଟୁ ପାଇଁ ଆରିସା ପିଠା ତ ଟୁଲୁ ପାଇଁ ରସଗୋଲା ମୁନୁ ପାଇଁ ତିଆରି ହୋଇଥାଏ ଛେଣା କାକରା । ଗୋପକୁ ନଡ଼ିଆ ଖେଚୁଡ଼ି ଖୁବ୍ ଭଲ ଲାଗେବୋଲି ତା' ପାଇଁ ସେଥିରୁ ଟିକିଏ ହୋଇଥାଏ । ତାପ କୁହେ ସୁଜିଖିରି ଠାରୁ ବଳି ଭଲ ଜିନିଷ ଆଉ କିଛି ନାହିଁ । ସୁଧା ପାଖରେ ପଦ୍ମ ଚୁଡ଼ିଅପତର ପିଠା ଥୁଆ ହୋଇଗଲା, ତା' ଖୁସି ଦେଖେ କିଏ ! ଆଜି-କାଲି ତ ଛେନା ପୋଡ଼ପିଠା ଗୋଟାଏ ଫେଶନ ହୋଇ-ଯାଇଛି । ତିନିତିନୋଟି ପୁଅ 'ବାହୁଡ଼ିଲା' ପରେ ବାବୁଲି ଜନ୍ମ ହୋଇଛି ବୋଲି ତା' ମା କୁଣ୍ଡାଚକୁଲି ମାନସିକ କରିଥିଲା । ପ୍ରକୃତରେ ଦେଖିବାକୁ ଗଲେ ଛେନା ନଡ଼ିଆ ପକାଇ ଯେଉଁ ପିଠା ହୁଏ, ସେଥିରେ ଶମ୍ଭୁଙ୍କ

କାଣ୍ଡିଆ କୁଣ୍ଡା ଛୁଞ୍ଚ ଦିଆଯାଇଥାଏ । ଶେଷରେ ଦେଖିଲି ବେଳକୁ ହରିବାବୁଙ୍କ ଘରେ ଅନ୍ତି କମ୍‌ରେ ଅଠର କୋଡ଼ିଏ ପ୍ରକାରର ପିଠାପଣା ଆଦି ବଢ଼ାହୋଇଯାଇଥାଏ । ହରିବାବୁ ଜନ୍ମ ହୋଇଥିଲେ କେନ୍ଦ୍ରାପଡ଼ାର ବଳଦେବଜୀଙ୍କ ମନ୍ଦିର ନିକଟରେ । ତେଣୁ ତାଙ୍କ ପାଇଁ ତିଆରି ହୋଇଛି ରସାବଳୀ । ଛେନାରେ ତିଆରି ହୋଇ ଷୀରରେ ପଡ଼ି ଏଭଳି ସୁଆଦ ଲାଗେ ଯେ, ସେହି ରସାବଳୀରୁ ଟିକିଏ ବେଶୀ ନ କରିଥିଲେ ପିଲାଙ୍କ ଭିତରେ କଳି ଲାଗେ ।

ହରିବାବୁଙ୍କୁ ଗାଁଯାକ ପିଲା ଖୁବ୍ ମାନନ୍ତି । ମାନିବାର କାରଣ ହେଉଛି ପ୍ରତି ମାସରେ ତିନି ଚାରି ଥର ସବୁ ପିଲାଙ୍କୁ ସେ କିଛି ନା କିଛି ଖୁଆନ୍ତି । ବଡ଼ ମଜାର ମଜାର ଗପ ଶୁଣାନ୍ତି । ଏହି ଶମ୍ବର ଦଶମୀ ଦିନ ତାଙ୍କୁ ଷାଠିଏ ବର୍ଷ ପୂରିଯାଉଛି । ଏପର୍ଯ୍ୟନ୍ତ ତାଙ୍କ ମା' ବଞ୍ଚିଛନ୍ତି । ବୁଢ଼ୀଙ୍କର ବୟସ ହେଲାଣି ଏକାଅଶୀ କି ବୟାଅଶୀ । ପୁଅକୁ ଅଣଷାଠୀ ପୂରି ଷାଠିଏ ପଶିଲାଦିନୁ ସେ ବରାବର କୁହନ୍ତି ଯେ, ପୁଅ ପାଇଁ ଏହି ବର୍ଷଟି ଖରାପ । ଭଲରେ ଭଲରେ ବର୍ଷଟି କଟିଯିବାରୁ ବାଲୀଲା କରିବା ପାଇଁ ମାଆବୁଢ଼ୀଙ୍କର ମନ । ଏଣେ ଦେଖିଲାବେଳକୁ ଆଜି ପୁଣି ତ ସମସ୍ତଙ୍କ ଘରେ ପିଠାପଣା । ଶେଷକୁ ବୁଢ଼ୀ ଗୋଟିଏ ଉପାୟ ପାଞ୍ଚିଲେ । ପିଲାଯାକ ଯିଏ ଯାହା ଘରେ ସକାଳ ଜଳ ଖାଆନ୍ତୁ—ରାତି ଜଳ ଖାଇବେ ତାଙ୍କ ଘରେ । ପିଲାଙ୍କୁ ଶୁଣାଇ ଦେଲେ ଆଜି ଏତେ ପରିମାଣରେ ରସାବଳୀ ତିଆରି ହେବ ଯେ, ଯିଏ ଯେତେ ଖାଇପାରିବେ । ସେହି ଲୋଭରେ ସନ୍ଧ୍ୟା ହେଉ ହେଉ ପିଲାମାନେ ଗୋଟିଏ ଗୋଟିଏ ଗଡ଼ିଲେଣି । ଏଣେ ପୁଣି କଥା କରି ନେଇଛନ୍ତି ଯେ, ହରିଅଜା ଆଜି ସବୁଠାରୁ ମଜା ଗପଟିଏ କହିବେ ।

ହରିବାବୁଙ୍କ ଦାଣ୍ଡ ମେଲାଟି ଯେମିତି ଲମ୍ବ, ସେମିତି ଓସାରିଆ । ଅଶୀବର୍ଷ ତଳେ ତିଆରି ହୋଇଥିଲା । ସେ ଯୁଗରେ ବଢ଼େଇ ମଜୁରି ଥିଲା ଦିନକୁ ଦଶ ପନ୍ଦର ପଇସା । ଶେଣି, ଝରୀ, କାଠରୂଅରେ କେତେ କାରୁକାର୍ଯ୍ୟ ହୋଇଛି । କାଠରେ ତିଆରି କଦଳୀ କାନ୍ଧି କେଡ଼େ ଶୋଭା ଦେଖାଯାଉଥାଏ । ଯାଉଁଳିକବାଟରେ ପିତଳ ଗୋବସବୁ ଦିଆହୋଇଛି ।

ଘରେ ଶୋଇଲାବେଳେ ଦାଣ୍ଡ କବାଟ ଯେତେବେଳେ ବନ୍ଦ ହୁଏ, ଗାଁ ସେମୁଣ୍ଡକୁ ଶୁଭେ ।

ସେହି ମେଲାରେ ସେଦିନ ବଡ଼ ଗାଲଗୁ ପଡ଼ିଗଲା । ହରିବାବୁ ଆଜିଜ ବସିବେ ବୋଲି ଗୋଟିଏ ଲମ୍ବ ମୋଟା ଚଉକିଆ । ସେ ବସିପଡ଼ିବାକୁ ଯାଉଛନ୍ତି, ଦାଣ୍ଡରେ ଧନବାବୁଙ୍କ ପାଟି ଶୁଭିଗଲା । ସେ ଆଜ ହଠାତ୍ ପହଞ୍ଚି ଯାଇଛନ୍ତି । ତାଙ୍କ ମାନଖିଆ ପାଟିର ହସଟା ଯିଏ ନଦେଖିଛି, ସେ ଜାଣିପାରିବ ନାହିଁ ସେ କେମିତି ମନଟୁଗଇ ହସନ୍ତି ।

ସମସ୍ତେ ତାଙ୍କୁ ଯାଇ ପାଛୋଟ ଆଣିଲେ । ଆଜ ସେ ନିଶ୍ଚୟ ରହିବେ ବୋଲି ସମସ୍ତଙ୍କ ଅଳି । "ସାଥୀରେ ତ ଲୋକ ଅଛନ୍ତି—ଯେତେ ରାତି ହେଉ ପଛକେ ଫେରିଯିବି—ଘର ତ ବାଟ କୋଶକରୁ କମ୍" କହି ସେ ଯାଇ ହରିବାବୁଙ୍କ ପାଖରେ ଚଉକିଆକୁ ଆଉଜି ବସିଗଲେ ।

ସେତେବେଳକୁ ତିରିଶ ଚାଳିଶ ପିଲା ଆସିଗଲେଣି । ଆଜ ଏତେ ପିଲା କାହିଁକି ଜମି ଯାଇଛନ୍ତି ବୋଲି ପଚାରି ଦେଲାରୁ ପିଲାଏ କହି ଉଠିଲେ—ଆଜ ଘର ଅଜାଙ୍କ ଜନ୍ମଦିନ—ସମସ୍ତେ ପେଟେ ପେଟେ ରସାବଳୀ ଖାଇବେ । ସେ ଭାରି ଖୁସୀ ହୋଇଗଲେ ଯେ ଆଜ ଠିକ୍ ଦିନରେ ଆସି ପହଞ୍ଚିଛନ୍ତି । ଆନନ୍ଦରେ ହରିବାବୁଙ୍କୁ କୁଣ୍ଢାଇ ପକାଇଲେ । ଭଗବାନ ଶହେବର୍ଷ ଆୟୁଷ ଦିଅନ୍ତୁ ବୋଲି କହୁ କହୁ ହରିବାବୁ ଟିକଏ ହସିଦେଇ କହିଲେ—ଆଜ ମୁଁ ଗୋଟାଏ ବାର୍ଦ୍ଧକ୍ୟରୁ ଖସିଗଲି । ତୁମଠାରୁ ପିଲାଏ ଭଲ ଗପଟିଏ ଶୁଣନ୍ତୁ ।"

ଧନବାବୁ ଆରମ୍ଭ କଲେ—ଆଜ ତୁମମାନଙ୍କୁ 'ସୁନା ଖୋଜୁ ଖୋଜୁ ସୁବର୍ଣ୍ଣଫଳ' ଗପଟି କହିବି । ଯେଉଁ ଲଙ୍କାରେ ରାବଣ ସୀତାଙ୍କୁ ନେଇ ଅଶୋକବନରେ ଲୁଚାଇ ରଖିଥିଲା, ସେହି ଦେଶର ପିଲାଏ ଏଇଟିକୁ ଶୁଣନ୍ତୁ । ରଜାଙ୍କର ଦୁଇ ପୁଅ ଥିଲେ । ଦିନେ ସେ ମନ୍ତ୍ରୀଙ୍କୁ ଡାକି କହିଲେ—ଦେଖ, ମୋର ଦୁଇ ପୁଅଙ୍କୁ ଗୋଟିଏ କଥା ସଫା ସଫା କହିଦିଅ । ସେମାନେ ଦି'ଜଣଯାକ ବିଦେଶକୁ ଯାଆନ୍ତୁ । ବିଦେଶରୁ ଫେରି

ଦୁଇଜଣ ପୁଅ ଆସି କହିବ କେଉଁ ଦେଶରେ ସୁନା ଭରପୂର ରହିଛି—ସେହି ପୁଅକୁ ମୁଁ ରାଜଗାଦିରେ ବସାଇବି ।' ଦୁଇପୁଅ ଗଲେ ବିଦେଶ କରି । ବର୍ଷେ ଗଲା, ଦି'ବର୍ଷ ପୂରିଗଲା ଫେରିଲେ ନାହିଁ । ତିନି ବର୍ଷ ପୂରିଲା ବେଳକୁ ଦୁଇଜଣଯାକ ଆସି ଏକାବେଳକେ ପହଞ୍ଚିଗଲେ । ସେମାନଙ୍କଠାରୁ ମନ୍ତ୍ରୀ ଜାଣିଲେ ଯେ, ଦୁଇଜଣଯାକ କେହି ସୁନାର ସନ୍ଧାନ ପାଇଲେ ନାହିଁ । ସେମାନେ ଅବଶ୍ୟ ଆଉ କେତେ ଚିଜ ଆଣିଥିଲେ । ଗୋଟି ଗୋଟି କରି ମନ୍ତ୍ରୀ ଦେଖିଲେ । ଶେଷରେ କହିଲେ—'ରାଜାଙ୍କ ସହିତ ତୁମେ ଦି'ଜଣ ଦେଖା କରନାହିଁ ।'

ସନ୍ଧ୍ୟା ହେଲା—ରାଜା ଆସି 'ସଭା'ରେ ବସିଲେ । ପ୍ରଥମେ ପଚାରିଲେ "ଫସଲ କେମିତି ହୋଇଛି"? ଯେତେବେଳେ ଶୁଣିଲେ ଫସଲ ଅବସ୍ଥା ଭଲ ନୁହେଁ, ତାଙ୍କ ମନ ଖରାପ ହୋଇଗଲା । ଲୋକେ ଗୋଟାଏ ବର୍ଷ ଚଳିବେ କେମିତି ବୋଲି ଭାବି ତାଙ୍କ ମନଟା ଦବି ଯାଉଥାଏ ।

ଏହି ମଉକା ଦେଖି ମନ୍ତ୍ରୀ କହିଦେଲେ—'ଦୁଇଜଣଯାକ ରାଜପୁତ୍ର ଅସିଗଲେଣି ।' ରାଜାଙ୍କ ପାଟିରୁ ହଠାତ୍ ବାହାରିପଡ଼ିଲା—'ସୁନାର ସନ୍ଧାନ କିଏ ପାଇଛି ?'

ମନ୍ତ୍ରୀ ହସି ହସି ଉତ୍ତର ଦେଲେ—ଦୁଇଜଣ ଯାକ ସୁବର୍ଣ୍ଣଫଳ ପାଇଛନ୍ତି । ଏହି ମୁହୂର୍ତ୍ତରେ ମୁଁ ନେଇଆସୁଛି ।' ଏତିକି କହି ଦେଇ—ରାଜାଙ୍କୁ ଆଉ ଭାବିବାକୁ ସମୟ ନ ଦେଇ ସେ ଉଠି ଚାଲିଗଲେ । ଅଳ୍ପ ସମୟ ପରେ ଗୋଟିଏ ନଡ଼ିଆ ଓ ଗୋଟିଏ ଅମ୍ବ ଆଣି ସମସ୍ତଙ୍କ ଆଗରେ ଥୋଇଦେଇ କହିଲେ—'ଏହି ଦୁଇ ଫଳ ଯଦି ଆମ ଦେଶରେ ପ୍ରଚୁର ଅମଳ ଫଳିବ ଲୋକେ ସୁନାଠାରୁ ଅଧିକ ମୂଲ୍ୟବାନ ଚିଜ ପାଇଯିବେ । ଗୋଟାଏ କୌଣସି ବର୍ଷ ଫସଲ ଭଲ ନ ହେଲେ ମଧ୍ୟ ଲୋକେ ଚଳିଯିବେ ।'

ସେ ଏଭଳି ଭାବରେ କଥାଟିକୁ କହିଦେଲେ ଯେ, ରାଜା ଖୁବ୍ ଖୁସି ହୋଇଗଲେ ଓ ପୁଅ ଦି'ଜଣଯାକ ସୁନା ନପାଆନ୍ତୁ ପଛକେ ଦେଶକୁ ସୁବର୍ଣ୍ଣ ଫଳ ଆଣିଛନ୍ତି ଦେଖି ସେମାନଙ୍କର ଖୁବ୍ ପ୍ରଶଂସା କଲେ ।

ଗପଟି ବେଶ ଭଲ ହୋଇଥିଲେ ମଧ୍ୟ ପିଲାଙ୍କ ମନ ତୃପ୍ତ ବୋଧ ହେଲାନାହିଁ। ରସଗୋଲାଟି ଯେତେ ସୁଆଦ ଲାଗୁପଛକେ "ଗୋଟିଏ ମାତ୍ର ଖାଇଦେଇ ଯାଅ" ବୋଲି କହିଲାଭଳି କଥାଟି ହୋଇଗଲା । ସେଇ କଥା ଲକ୍ଷ୍ୟ କରି ଘନବାବୁ କହିଲେ—'ନାଇଁରେ ପିଲାଏ— ଗପଟି ଏତିକି ସରିଲା ନାହିଁ । ଆହୁରି ଅଛି ଶୁଣ' ।

ଏତକ କହି ସେ ଛୁଡି ପକେଟରୁ ଗୋଟାଏ କ'ଣ ବାହାର କରି ଥୋଇଦେଲେ । ସେଇଟି ଆମ ଦିଆସିଲି ଖୋଲଠାରୁ ଅଳ୍ପ ଟିକିଏ ବଡ଼ । ସେଇଟିକୁ ହାତରେ ଧରି କହିଲେ—'ଏଇଟି କେତେ ଚମତ୍କାର ଟ୍ରାଞ୍ଜିଷ୍ଟର ରେଡ଼ିଓ ଦେଖିଲ' । ଏତକ କହୁ କହୁ ତାକୁ ବଜାଇଦେଲେ । ପିଲାମାନେ ଏତେ ଛୋଟ ରେଡ଼ିଓ କେବେ ଦେଖି ନ ଥିଲେ ।

ଘନବାବୁ ଆରମ୍ଭ କଲେ—ଏଇଟି ଜାଣି ଗୋଟିଏ ସୁବର୍ଣ୍ଣ ଫଳ । ୧୯୫୭ ଅକଟୋବର ୪ ତାରିଖ ଦିନୁ ମନୁଷ୍ୟ ଚେଷ୍ଟା କରି ଆସୁଥିଲା କେମିତି ପୃଥିବୀ ବାହାରେ ମହାକାଶ ଭିତରେ ଯାଇ ଯାଇ ଚନ୍ଦ୍ର ଦେହରେ ଓହ୍ଲାଇ ପଡ଼ନ୍ତା କି ! ସତକୁସତ ସେ ବାରବର୍ଷ ଚେଷ୍ଟା କରି କରି ଚନ୍ଦ୍ରରେ ଦିନେ ଓହ୍ଲାଇପଡ଼ିଲା । ମନୁଷ୍ୟ ଜାତିର ଆନନ୍ଦ ଦେଖେ କିଏ ! ତାହାପରେ ଚେଷ୍ଟା ଚାଲିଛି କୋଟି କୋଟି ମାଇଲ ଦୂରକୁ ମହାକାଶ ଯାନସବୁ ପଠାଇବାପାଇଁ । ବୈଜ୍ଞାନିକମାନେ କହୁଛନ୍ତି ଯେ, ଦିନେ ସେମାନେ ମହାକାଶର ରହସ୍ୟ ଭେଦ କରିପିବେ—ଶୁକ୍ର ଗ୍ରହ ଯେଉଁସବୁ ଗୋପନ ତଥ୍ୟ ଲୁଚାଇ ରଖିଛି, ସେଗୁଡ଼ିକ ଜାଣି ପକାଇବେ ଇତ୍ୟାଦି ଇତ୍ୟାଦି । ମୋର କହିବାର କଥା ସେମାନେ ସେସବୁ କରନ୍ତୁ ବା ନକରନ୍ତୁ ସେଗୁଡ଼ା ବଡ଼ କଥା ନୁହେଁ । ତାକୁହିଁ ମୁଁ ସୁନା ଖୋଜା ଉଦ୍ୟମ ବୋଲି କହୁଛି । କିନ୍ତୁ ସେହି ଚେଷ୍ଟା—ସେହି ଉଦ୍ୟମ ଭିତରୁ ଆମେ ପାଇପାରୁଛୁ, ଏହି ଟ୍ରାଞ୍ଜିଷ୍ଟର ଭଳି ନାନା ଜାତିର ସୁବର୍ଣ୍ଣ ଫଳ' ।

ବାବୁଲି ଓ ରଜୁ ହୋଇଛନ୍ତି ତଳ ଉପର ଭାଇ । ଭଲ ଭଲ କଥା ସାଉଁଟି ଆଣି ମୁଣ୍ଡ ଭିତରେ ସାଇତି ରଖିବାରେ ଦି'ଜଣଯାକ ଧୁରନ୍ଧର । ସେମାନେ ଉଭୟେ ଖୁବ ଆଗ୍ରହ ଦେଖାଇ ପଚାରିଲେ—

'ମନୁଷ୍ୟ ଜାତି ଯଦି ମହାକାଶଆଡେ ମୁହାଁଇ ନଥାନ୍ତା, ଏତେ ଶ୍ରେଷ୍ଠ ଶ୍ରେଷ୍ଠ ରେଡ଼ିଓ କ'ଣ ସତରେ ବାହାରି ନଥାନ୍ତା ?'

ଏଭଳି ପ୍ରଶ୍ନଟିଏ ଶୁଣି ଧନ ବାବୁ ଟିକିଏ ଉତ୍ସାହିତ ହୋଇଯାଇ ଆହୁରି କହିଲେ—ମହାକାଶ ବିଜ୍ଞାନ ମନୁଷ୍ୟ ଜାତିକୁ ସତେ ଯେପରିକି ଶୁଣାଇଲା, ଯଦି ଶ୍ରେଷ୍ଠରୁ ଶ୍ରେଷ୍ଠ, ସୂକ୍ଷ୍ମରୁ ସକ୍ଷ୍ମ ଜିନିଷସବୁ ତିଆରି ନକରିବ, ମହାକାଶଯାନ ଦେହରେ ସେଗୁଡ଼ିକ ଖଞ୍ଜାଯାଇପାରିବ କିପରି ? ଚନ୍ଦ୍ରରେ ଯିଏ ଓହ୍ଲାଇଲା ସେଠା ଦୃଶ୍ୟ ପୃଥିବୀର ଲୋକଙ୍କୁ ଦେଖାଇବାପାଇଁ ତାକୁ କୁହାଯାଇଛି । ତା'ସଙ୍ଗରେ ପଠାଯାଇଛି ଗୋଟିଏ ଅତି ଶ୍ରେଷ୍ଠ ଟେଲି-ଭିଜନ ଯନ୍ତ୍ର । ସେଇଟିକୁ ତିଆରି କରିବାପାଇଁ ସକ୍ଷ୍ମ ସକ୍ଷ୍ମ ପାର୍ଟ୍‌ସବୁ ଲୋଡ଼ା ହୋଇଛି । ଯେଉଁ କାରିଗରମାନେ ସେସବୁ ତିଆରି କରୁଛନ୍ତି, ସେମାନେ ଶ୍ରେଷ୍ଠ ଶ୍ରେଷ୍ଠ କାମେରା, ଟେଲିଭିଜନ, ରେଡ଼ିଓ ତିଆରି କରିଦେଉଛନ୍ତି ଆମରି ପାଇଁ । ମନୁଷ୍ୟ ହାତର ବାହାଦୁରି ପ୍ରମାଣିତ ହୋଇଯାଉଛି ଏହିଭଳି ସୂକ୍ଷ୍ମ ଜିନିଷସବୁ ସୃଷ୍ଟି କରିବାରେ । ମହାକାଶ ବିଜ୍ଞାନ ପୂର୍ବରୁ ମନୁଷ୍ୟର ଧାରଣା ନଥିଲା, କେତେ ଅଳ୍ପ ସ୍ଥାନରେ କେତେ ଶ୍ରେଷ୍ଠ ଶ୍ରେଷ୍ଠ ଯନ୍ତ୍ର ଖଞ୍ଜା ଯାଇପାରେ ଓ ସେହିସବୁ ଯନ୍ତ୍ର କେମିତିକା ଚମତ୍କାର କାମ କରିପାରନ୍ତି ।'

ପିଲାମାନେ ସେତେବେଳକୁ ସତେ ଯେପରିକି ମନପବନ ଘୋଡାରେ ବସି ଉଡିଲେଣି ! ଏତିକିବେଳେ ହରିବାବୁ ଅପସନ୍ଧିଆ ହସଟିଏ ହସିଦେଲେ ଓ ଆଖି ଦୁଇଟାକୁ ବୁଜିଦେଇ ବସିଗଲେ । ଧନବାବୁ ଅନୁଭବ କଲେ—ସେ ଯେତେ ଯେତେ କଥା କହିଥିଲେ, ସବୁତକ ସତେ ଯେପରି କି ସେହି ହସରେ କୁଆଡେ ଉଡ଼ିଗଲା ! ତାଙ୍କ ମୁହଁରୁ ଜଣା ପଡ଼ୁଥାଏ, ତାଙ୍କୁ ଯେମିତିକି ଟିକିଏ ଅପମାନ ହୋଇଯାଇଛି । ସେ ଟାଣକରି ପଚାରିଦେଲେ—'ମନୁଷ୍ୟ କଣ ପ୍ରକୃତିରେ କାରିଗରି ବିଦ୍ୟା'ରେ ସୂକ୍ଷ୍ମରୁ ସକ୍ଷ୍ମ, ଶ୍ରେଷ୍ଠରୁ ଶ୍ରେଷ୍ଠଆଡ଼କୁ ଜୋରରେ ଆଗେଇ ଯାଉନାହାଁ ?'

ହରିବାବୁ ଟିକିଏ ଅପ୍ରସ୍ତୁତ ହୋଇଗଲେ । ପିଲାଙ୍କ ଆଗରେ ଏଭଳି ହସିଦେବାଟା ଠିକ୍ ହୋଇ ନାହିଁ ବୋଲି ଅନୁଭବ କଲେ । କିନ୍ତୁ ଧନବାବୁଙ୍କ କଥାକୁ ଖଣ୍ଡନ କରିବାକୁ ତାଙ୍କର ଉଦ୍ଦେଶ୍ୟ ନଥିଲା—ବରଂ

ତାଙ୍କ କଥାଟା କେତେ ଓଜନଦାର ତାହାହିଁ ପ୍ରମାଣ କରିବା ପାଇଁ ସେ ହସିଥିଲେ । ଟିକଏ ଥମି ମାଟିଲି ଭଳି ସ୍ୱରରେ କହିଲେ—

'ଅଳ୍ପ ଦିନ ତଳର ଗୋଟିଏ କଥା ମନେ ପଡ଼ିଯିବାରୁ ମୋତେ ହସ ମାଡ଼ିଲା ! ମୁଁ କଟକ ଯାଇଥିଲି । ମୋ ପିଲାଦିନର ସାଙ୍ଗ ବିପିନ ବାବୁ ତାଙ୍କ ଘରକୁ ଡାକି ନେଲେ । ଅନେକ ଦିନୁ କେହି କାହାକୁ ଦେଖି ନଥିଲୁ । ଘଣ୍ଟାଏ କାଳ ଖୁବ ଦୁଃଖ ସୁଖ ହେଲୁ । ତାଙ୍କ ବଡ଼ ପୁଅ ଡାକ୍ତରୀ ପଢ଼ୁଥିଲା—ଆଜି ଅଳ୍ପ ଦିନେ ପାଶ୍ କରି ଆସିବ ଶୁଣି ମୋର ବଡ ଆନନ୍ଦ ହେଲା । ସେ କହିଲେ—ମୁଁ ତୁମକୁ ଗୋଟିଏ କାରଖାନା ଦେଖାଇବାକୁ ନେଇଯିବି । ଦେଖିଲେ ଭାରି ଖୁସି ହେବ—ସେଠାରେ କେମିତିକା ଚମତ୍କାର କାମ ହେଉଛି !'

ମୁଁ କହିଲି—'ଆଉ ସେ ସବୁ କାରଖାନା ଦେଖିବାକୁ ସେମିତି କିଛି ମନ ନାହିଁ । ତୁମମାନଙ୍କ ସଦିଚ୍ଛାରୁ କେବଳ ଏହି ଦେଶର କାହିଁକି, ବିଦେଶର ବହୁ କାରଖାନା ଦେଖି ଆସିଲିଣି । ଏ କଥା ସତ ଯେ, ଗଲା ଶହେବର୍ଷ ଭିତରେ ମନୁଷ୍ୟ ଯେତେ ବିଚିତ୍ର କଳକାରଖାନା ତିଆରି କରି ଦେଲାଣି, ତା ପୂର୍ବର ହଜାରେ ଦି' ହଜାର ବର୍ଷରେ ମଧ୍ୟ ତାହାର ଶହେ ଭାଗରୁ ଭାଗେ କରିନଥିଲା । ସେ ସବୁ ଦେଖି ସତରେ ଆଖି ଖୋସି ହୋଇଯିବ—କେଡ଼େ ବଡ଼ ବଡ଼ କାରଖାନା ସେ ସବୁ !'

କିନ୍ତୁ ସେ ଖୁବ୍ ଜୋର ଦେଇ ବୁଝାଇଲେ ଯେ ମୋତେ ଗୋଟିଏ "ସୃଷ୍ଟି କାରଖାନା"କୁ ନେଇଯିବେ । ସେଠାରେ ଯେଉଁ ବିଚିତ୍ର କାର୍ଯ୍ୟ ହେଉଛି, ତାହା କୁଆଡେ ମୁଁ କଳ୍ପନା ମଧ୍ୟ କରିପାରିବିନାହିଁ । ସେହି ବିଚିତ୍ର କାରଖାନାଟିର ଲମ୍ବ ମୂଣ୍ଡରୁ ସେମୁଣ୍ଡ କେବଳ ପଚିଶ ଛବିଶ ଇଞ୍ଚ ବା ଏକ ମିଟରରୁ ମଧ୍ୟ କମ୍ ।

ସମସ୍ତେ ହସିଉଠିଲେ—ଘନ ବାବୁ ମଧ୍ୟ । ବୁଢ଼ା ପୁଣି କହିଲେ—'ବିପିନବାବୁ କହିଲା ବେଳେ ମୁଁ ମଧ୍ୟ ହସି ଦେଇଥିଲି । କିନ୍ତୁ ସେ ଗମ୍ଭୀର ଭାବରେ ବୁଝଉ ଥାଆନ୍ତି—ଏଡ଼କ ଗ୍ରେଟ କାରଖାନା ଭିତରେ

ଆହୁରି କେତେଗୁଡ଼ିଏ ଅତି ଶ୍ରେଷ୍ଠ କଳ ମଧ୍ୟ ଖଞ୍ଜାଯାଇଛି । ସେଗୁଡ଼ିକ ଭିତରେ ଯାହାସବୁ ହେଉଛି ତାକୁ ଶୁଣିଲେ ବିଶ୍ୱାସ କରିବା ତ ଦୂରର କଥା—ଦଶଥର ଦେଖିଲା ପରେ ମଧ୍ୟ ନିଜ ଆଖିକୁ ବିଶ୍ୱାସ କରି ହେବ ନାହିଁ ।" ଇଚ୍ଛା ନଥିଲେ ମଧ୍ୟ କଣ ହେବ—ମୁଁ ତାଙ୍କ ସଙ୍ଗରେ ଯିବାକୁ ରାଜି ହୋଇଗଲି ।

ଦୁଇଜଣଯାକ ଯାଇ ଗୋଟିଏ ସ୍ଥାନରେ ପହଞ୍ଚିଗଲୁ । ସେ ଟିକିଏ ଅଟକିଯାଇ କହିଲେ—'ଆମେ ଆସି ପହଞ୍ଚିଗଲେ ଫାଟକ ପାଖରେ ।' ମୁଁ ବିଚାରୁଥାଏ ସେ ସତେ ଯେପରିକି ମୋତେ ଥଟ୍ଟା କରୁଛନ୍ତି ।

ଆରମ୍ଭ କଲେ—"ଏଭଳି ଶ୍ରେଷ୍ଠ କାରଖାନାଟିଏ ମନୁଷ୍ୟ କେବେ ହେଲେ କରିପାରିବ ନାହିଁ । ଗଲା ଷାଠିଏ ବର୍ଷ ହେଲା ଏଥିରେ କାମ ଚାଲିଛି । ଏହା ଭିତରର କୌଣସି ଗୋଟିଏହେଲେ ଯନ୍ତ୍ର କେବେ ମରାମତି ହୋଇନାହିଁ ।"

ମନେ ମନେ ବିଚାରୁଥାଏ—ମୁଁ ତ କାରଖାନାଟିକୁ ଦେଖି ପାରୁନାହିଁ—ସେ ଏଭଳି କହି ଚାଲିଛନ୍ତି କଅଣ ! ମୋ ମନର କଥା ବୁଝିପାରିଲା ଭଳି ଭାବ ଦେଖାଇ ସେ କହିଲେ—"ଭିତରଟା ପରେ ଦେଖିବ—ପ୍ରଥମେ ଶୁଣ, ତା' ଭିତରେ କଅଣ ସବୁ ହେଉଛି । ପହିଲେ ଗୋଟିଏ କାମ କଥା କହିଦିଏ । ଏହି କାରଖାନାର ବାହାଦୁରୀ ହେଲା ମଲାକୁ ଜୀଆଇ ଦେବ !"

ମୁଁ ଚମକି ପଡ଼ିଲି ଭଳି ହୋ'ଇଗଲି । ମଲାକୁ ଜୀଆଇଲା ଭଳି କାରଖାନା ପୁଣି ଅଛି ! ଅସମ୍ଭବ କଥା ଶୁଣାଇବାର ପୁଣିତ ଗୋଟାଏ ସୀମା ଅଛି । ବିପିନବାବୁ ସେ ସୀମା ଟପିଗଲେଣି ଦେଖି ଟିକିଏ ଧୀର ସ୍ୱରରେ କହିଲି—"ଖୁବ୍ ହେଲା, କାରଖାନା ତ ଦେଖି ସାରିଲେ—ଏଥର ଚାଲ ଫେରିଯିବା ।" ମୋ କାନ୍ଧରେ ହାତ ପକାଇ ଦେଇ ସେ ବୁଝାଇଲେ—ମୋ କଥାକୁ ସତ ମଣିବାକୁ ତମ ମନଟାକୁ ତିଆରି କରିପାରୁନା ବୋଧହୁଏ । ଯଦି ଗୋଟାଏ ଛେଳି ଆଣି ମାରିଦେବ ଓ ତା' ମାଂସକୁ ସିଝାଇ ଏହି କାରଖାନା ଭିତରେ ପୂରାଇଦେବ, ଦେଖିବ ସେ ପୁଣି

ଯାଇଗଲାଣି । ସେଇଥିପାଇଁ ତା' ନାଁ ଦିଆଯାଇଛି "ଜୀବନ ତିଆର କାରଖାନା" । ତାହାର ଭିତରେ ଏଭଳି ବ୍ୟବସ୍ଥା ରହିଛି ଯେ ଜୀବନ ତିଆର ହୋଇଯାଉଛି, ମଲା ଜୀଇ ଉଠୁଛି ।

ଘନବାବୁ ଏଥର ବୁଝିଗଲେଣି ହରିବାବୁ କଥାଟାକୁ କେଉଁ ଦିଗରେ ମୁହାଁଇ ଦେଲେଣି । କିନ୍ତୁ ପିଲାମାନେ କିଛି ଧରିପାରୁ ନାହାନ୍ତି । "ଜୀବନ ତିଆର କାରଖାନା" ଭଳି ଗୋଟାଏ କଥା ଶୁଣି ସେମାନେ ରୂପାବଳୀ ଓ ଛଣା କାକର କଥା ଭୁଲିଗଲେଣି କହିଲେ ଚଳେ । ଯେଉଁ ଦି' ଚାରିଜଣ ସବୁଠାରୁ ବୁଢ଼ିଆ, ସେମାନେ ମଧ୍ୟ କିଛି ପଚାରି ପାରୁନାହାନ୍ତି ସତେ ଯେପରିକି ପାଟି ଫାକୁ ଫାକୁ କଲାଭଳି ହୋଇ ରହି ଯାଉଛନ୍ତି । ହରିବାବୁଙ୍କୁ ବିକଳ ଲାଗିଲା—ପିଲାଙ୍କ ମନକୁ ଆଉ ଏଭଳି ଅବସ୍ଥାରେ ରଖିବା ଠିକ୍ ହେବନାହିଁ ବୋଲି ଭାବି ସେ ଅସଲ କଥାଟି ଆରମ୍ଭ କରିଦେଲେ । ପିଲାଙ୍କ ଭିତରେ ଚୁନା ହେଉଛି ସବୁଠାରୁ ଡେଙ୍ଗା । ତା' ବୟସ ତୁଳନାରେ ସେ ଟିକିଏ ବେଶୀ ଉଚ୍ଚା ହୋଇଯାଇଛି । ହରିଅଜା ତାକୁ ପାଖକୁ ଡାକି ଠିଆ କରାଇଲେ । ପାଖରେ ଗୋଟାଏ ଫୁଟିକିଆ ସ୍କେଲ ଥୁଆ ହୋଇଥିଲା । ସେଇଥିରେ ତା ପାଟି ପାଖରୁ ତଳପେଟ ଶେଷ ଯାଏ ମାପିଦେଇ କହିଲେ—"ଦେଖିଲ—ଏଇଠୁ ଏଇଯାଏ ହେଲା ସତେଇଶ ଇଞ୍ଚ । ଜୀବନ ତିଆର କାରଖାନାର ଲମ୍ବ ହେଲା ଏତିକି ।"

ପିଲାଏ ହସି ଉଠିଲେ । ତା' ହେଲେ ତା'ର ଦେହରେ ସେ କାରଖାନାଟିକୁ ବସାଇଦେଲେତ ହୋଇଯାଆନ୍ତା ବୋଲି ଏକାବେଳକେ ତିନିଜଣ ପାଟିକରି ଉଠିଲେ ।

ଅଜା କହିଲେ—'ବସାଇଦେବା କଣ ? ତା'ର ଭିତରେ ତ ସେ କାରଖାନା ଆଗରୁ ବସିସାରିଛି । ଯଦି ତା' ଦେହକୁ ଚିରି ଦିଆଯିବ ଦେଖିପାରିବ ସେଇଟି କେମିତି ଦେଖାଯାଉଛି । ଆମେ ତ ତାକୁ ଆଉ ଚିରି ପାରିବାନାହିଁ—ଦେହ ଭିତର ବାହାରୁ ଦେଖି ପାରିବା ତା' ଭିତରଟା କେମିତି ହୋଇଥିବ ।'



ପିଲାଙ୍କ ସାମନାରେ ସେ ଏହି ଚିତ୍ରଟି ଥୋଇଦେଲେ । ପାଟି ପାଖରୁ

ଗୋଟିଏ ନଳୀ ଗୁଡ଼ାଏ ଭିତରଦେଇ ଗୁଳିପାଇଛି । ସେଇଟି ଶେଷ ହୋଇଛି ପେଟ ଯେଉଁଠି ଆରମ୍ଭ ହୋଇଛି ସେଇଠେ । ଟେଣିକ ସମସ୍ତେ ଦେଖିଲେ ।



ହରି ଅଜା ତାହାପରେ ଏହି ଛବିଟି ଦେଖାଇ ବୁଝାଇଲେ—

ସାମନାପଟ ଦେଖିଲ ସେହି କାରଖାନାଟି କେମିତି ଦେଖାଯାଉଥିଲା—ଏଣିକି ଦେଖ, ପିଠିଆଡ଼ୁ ଦେଖିଲେ କେମିତି ଦିଶନ୍ତା ।’

ଇଏ ତା’ଠାରୁ ସିଏ ସ୍ୱା’ଠାରୁ ନେଇ ଚିତ୍ର ଦୁଇଟିକୁ ଭଲ ଭାବରେ ଦେଖିଲେ ଭିତରେ ଆସିଗଲା ଗୋଟେଟି ଥାଳିରେ ବଡ଼ିଆ ଅଙ୍ଗୁର । ଘନବାବୁ ସେତକ ଆଣିଥିଲେ । ଖାଇବା ବେଳ ତ ଡେରିଅଛି—ଏଥିରୁ ଗୋଟିଏ ଗୋଟିଏ ପାଟିରେ ପକା ବୋଲି ହସି ହସି ଠାରି ଦେଇ ସେ କହିଲେ—‘ଖାଆ ଚାଲିଥାଉ—ଏଣେ ଜୀବନ ତିଆରି କାରଖାନା କଥା ଶୁଣାଯାଉଥାଉ ।’

“ଅଙ୍ଗୁର ତ ମିଠା—ତା’ ସାଙ୍ଗକୁ ନିଜ ଦେହ ଭିତରର ଗପ କିଛି କମ୍ ସୁଆଦିଆ ନୁହେଁ”—ବୋଲି ଗୀତା ଯେମିତି କହି ଦେଇଛି, କବିତା ପାଟିକରି ଉଠିଲା, “ତୋରି ଯୋଗୁଁ ଆଜି ଏହି ଭଲ ଗପଟ ସରିବ ନାହିଁ— ଖାଲି କଥା ଉପରେ କଥା ଚଳେଇଛି ।” ଅଜା ତା’ ଆଡ଼କୁ ଚାହିଁ ବୁଝାଇଲେ—

ଗୀତା ଯାହା କହିଲା ତାହା ଖୁବ୍ ସତ । ପୂର୍ବେ ଆମେ ଜାଣି ପାରୁନଥିଲେ ଏହି ଦେହ ଭିତରେ କେମିତି ସବୁ କାମ ହେଉଛି ବୋଲି । ଏବେ ଡାକ୍ତରମାନେ ଏତେ କଥା ଜାଣିଗଲେଣି ଯେ, ସେ ସବୁ ଶୁଣିଲେ ଆମେ କାବା ହୋଇଯିବା । ସେଥିରୁ ଗୋଟିକ ବିଷୟରେ ମୁଁ ଆଜି ତୁମମାନଙ୍କୁ ବୁଝାଇବି ।

“ପେଟ ଭିତରେ ମଲା ଛେଳିଟା ଜୀଇଯାଉଛି’ ବୋଲି କହିଦେଲେ ଯେ କୌଣସି ଲୋକ ନିଶ୍ଚୟ ଅପସନ୍ଦିଆ ହସଟାଏ ହସିଦେବ । କିନ୍ତୁ ଟିକିଏ ଭାବିଲ—ଦେଖି ପ୍ରକୃତରେ କ’ଣ ସେମିତିକା କାମ ହେଉନାହିଁ ? ଆମେ ମାଂସ ଖାଉଛୁ । ସେ ମାଂସ ପେଟ ଭିତରେ ହଜମ ହେଉଛି । ହଜମ ହେଉଛି କହିଲେ ଏତିକି ବୁଝିରଖ ଯେ, ତାହାର ସାର ଅଂଶତକ ରକ୍ତରେ ମିଶିଯାଉଛି । ‘ଚଳନ୍ତା ବଇଜର ଅମୃତ ନଈ’ ବହିରେ ପଢ଼ିଛ ରକ୍ତ କେମିତି ଦେହର ଚାରିଆଡ଼େ ଅତି ଜୋରରେ ବହୁଛି । ସେ ରକ୍ତକୁ ଗୋଟିଏ ବିଚିତ୍ର କାରିଗର ବୋଲି ଯେ କୁହାଯାଏ ତାର କାରଣ ହେଲା—ମାଂସରୁ ଯେଉଁ ରସ ତା’ ଦେହରେ ମିଶିଥିଲା, ତାକୁ ହିଁ କାମରେ ଲଗାଇ

ସେ ଆମ ଦେହରେ ମାଂସ ହାଡ଼ ସବୁ ଗଢ଼ି ଦେଉଛି—ମରାମତି କରି ଦେଉଛି ।

ଠୁଣ୍ଟୁ ସେତେବେଳକୁ ଟିକିଏ ଆଗକୁ ମାଡ଼ି ଆସିଲାଣି । ତା' ଦ୍ୱାରା ପାଠ ହେବନି ବୋଲି ବୁଢ଼ୀମା' ଯେତେ କହୁଥା'ନ୍ତୁ ପଛକେ ତା' ଆଖି ହିଁ'ଟା କହିଦେଉଛି ସେ ଭାରି ବୁଦ୍ଧିମାନ୍ । ସେ ପଚାରିଲା—'ମାଂସ ତ ହଜମ ହୋଇଗଲା—ପୁଣି ତା' ରସ କେମିତି ରକ୍ତରେ ମିଶିଲା ?'

ଅଜା ଟିକିଏ ମୁରୁକି ହସି ଉତ୍ତର ଦେଲେ—'ଏଇ ଠୁଣ୍ଟୁ ଧନେ ନିଶ୍ଚେ ବଡ଼ ମଣିଷଟିଏ ହେବ—ତା' ନହେଲେ ଏମିତି ଗର୍ଣ୍ଣ ପ୍ରଶ୍ନଟାଏ ପଚାରି ଦେଇ ଥାଆନ୍ତା କି ! ହଜମ କଥାଟିର ଅସଲ ଅର୍ଥ ହେଉଛି ଆମେ ଯାହାସବୁ ଖାଉଛୁ, ତା'ର ରସ ରକ୍ତରେ ମିଶୁଛି । ଯଦି ସେମିତି ମିଶି ନପାରିଲା ତେବେ ହଜମ ହେଉନାହିଁ ବୋଲି ବୁଝାଯାଏ । ଆମେ ଭାତ ଖାଉଛୁ—ରୁଟି ଖାଉଛୁ । ପେଟ ଭିତରକୁ ଗଲା ପରେ କେତେଗୁଡ଼ାଏ ରସ ପେଟରୁ ଝରି ସେଥିରେ ମିଶିଯାଉଛି ।

ସେହି ରସ ସବୁ ସେପରିକି ତାକୁ ବନ୍ଧା ଷୀରୀ ଭଳି ଜାଉ ଭଳି କରିଦେଉଛି । ତାହା ପରେ ସେଥିର ଗୋଟାଏ ଅଂଶ ଚିନି ଶିରା ଭଳି ହୋଇଯାଉଛି ବୋଲି ଅନୁମାନ କରନ୍ତୁ । ଆଉ ଗୋଟାଏ ପ୍ରକାରର ପାଗ ଏମିତି ହୋଇଯାଇଛି ଯେ, ଭାତ ରୁଟିର ରସକୁ ସେତେବେଳେ ବୁଝା-ଯାଉଛି "ରକତ-ଚିନି" । ସେତେବେଳେ ଯାଇ ତା' ରକ୍ତ ସାଙ୍ଗରେ ମିଶିଗଲା । ଏହି ଯେ ମିଶିଗଲା ତା'ର ନାଁ ହେଲା "ଭାତ ହଜମ ହୋଇ ଯାଇଛି ।" ସାରତକ ରକ୍ତରେ ମିଶିଲା ପରେ ଯେତକ 'ଖଦଡ଼ା' ବା ଅଦରକାରୀ ରହିଗଲା ସେତକ ଝାଡ଼ା ପଦାକୁ ବାହାରିଗଲା ।

ରେଣୁ ବୋଲି ଯେଉଁ ଝିଅଟି ଧନବାବୁଙ୍କ ପାଖରେ ବସିଥିଲା, ତା'ର ସ୍ୱଭାବ ହେଲା ସେ ଦଶପଦ ଶୁଣିଲେ ଯାଇ ପଦେ କହିବ । ଥିରଥିର କରି ସେ ପଚାରିଲା—ରକ୍ତରେ ତ ଭାତରସ ରୁଟିରସ ପ୍ରତିଦିନ ମିଶୁଛି, ଦେହ ଭିତରେ ସେଗୁଡ଼ା ପୁଣି ରହୁଛି କେଉଁଠି ?

ହରିବାବୁ ଚାହିଁଲେ ଧନବାବୁଙ୍କ ଆଡ଼କୁ—"ଦେଖିଲ, ଆମ ପିଲାବେଳେ ଏସବୁ କଥା ଶୁଣିନଥିଲେ । ତେଣୁ ଆମ ମନ ଭିତରକୁ ଏହି

ଧରଣର ପ୍ରଶ୍ନ ଆସୁନଥିଲା । ଆଜିର ପିଲା କେତେ ଜଟିଳ କଥାକୁ କେମିତି ସହଜରେ ବୁଝିଯାଉଛନ୍ତି ଦେଖୁଛ ତ ?"

ରେଣୁ ଆଡ଼କୁ ଅନାଇ ଆରମ୍ଭ କଲେ—"ସବୁତକ ରହିବ କାହିଁକି ? ମଟର ଗାଡ଼ି ଭିତରେ ପେଟ୍ରୋଲ ପୂରାଇ ଦଆଯାଉଛି । ସେହି ପେଟ୍ରୋଲ "ଜଳଲେ" ଗାଡ଼ି ଚାଲିଲା । ଚାରି ପାଞ୍ଚ ଘଣ୍ଟା ଚାଲିଲା ପରେ ପେଟ୍ରୋଲ ଶେଷ ହୋଇଗଲା—ପୁଣି ପଶିଲା । ଏମିତିକା ହୁଏନାହିଁ ? ତୋ ଦେହଟି ଜାଣି ଗୋଟିଏ ଗାଡ଼ି । ତୁ ଚାଲୁଛୁ ବୁଲୁଛୁ ଦୌଡ଼ୁଛୁ । ଶାଗ କିଆରିରେ ପାଣି ଦେଉଛୁ । କୂଅରୁ ପାଣି କାଢ଼ି ମାଆକୁ ନେଇ ରୋଷେଇଘରେ ଦେଇଦେଉଛୁ । ତୋ ଦେହ ଏହିସବୁ କାମକରୁଛି ରକ୍ତରେ ଥିବା 'ଚିନିକୁ' ଜାଳି ଜାଳି । କ୍ରମେ ଯେତେବେଳେ ସେତକ ଶେଷ ହୋଇଯାଉଛି ତୁ କହୁଛୁ, 'ମା ! ଭାରି ଭୋକ ହେଲାଣି ।' ଭୋକ ହେଲାଣି ମାନେ ରକ୍ତରୁ ଚିନିତକ ଖର୍ଚ୍ଚ ହୋଇ ଆସିଲାଣି । ପୁଣି ଖାଇଦେଲେ ଚିନି ମିଶିବା କାମ ଆରମ୍ଭ ହୋଇଯିବ । ମଟରପାଇଁ ପେଟ୍ରୋଲ ଯାହା—ଆମ ଦେହର ମାଂସପେଶୀଗୁଡ଼ିକ ପାଇଁ ରକ୍ତଚିନି ସେଇଆ । ସେଇଥିପାଇଁ ଦେଖିଥିବ, ଯେଉଁ ଲୋକ ଯେତେ ଅଧିକ ପରିଶ୍ରମ କରେ —ହଳବାହିରେ ଖଟୁଥାଏ ସେ ସେତେ ଅଧିକ ପରିମାଣରେ ଭାତ ଖାଏ । ଯେଉଁ ଲୋକ ଦିନକୁ ଆଠଘଣ୍ଟା କରତରେ କାଠ ଚିରୁଛି କି ମାଟି ବୋହୁଛି ସେ ନିଶ୍ଚୟ ବଡ଼ ଥାଳୀରେ ମାଡ଼ମୁଣ୍ଡ଼ ଥାଳେ ଭାତ ଖାଇବ । ପରିଶ୍ରମୀ ଲୋକ ପାଇଁ ବେଶୀ ବେଶୀ ଖାଦ୍ୟ ନିଶ୍ଚୟ ଦରକାର ।"

ଏଇତକ ଶୁଣି ପିଲାଏ ନିଜ ଭିତରେ କଅଣ ସବୁ ପଚରା ପଚରି ହେଉଛନ୍ତି ଦେଖି ଅଜା କହିଲେ—"ମୁଁ ଅନୁମାନ କରିପାରୁଛି, ତୁମେ ସବୁ କ'ଣ ପଚରାପଚରି ହେଉଛ । ଆଉ ଟିକିଏ ଶୁଣ—ତାହା ପରେ ଆଲୋଚନା କରିବା । ଆଗରୁ କହିଥିଲି ଆମେ ମାଂସ ଖାଇଲେ କ'ଣ ହୁଏ ବୋଲି । ସେଇ କଥାକୁ ଆଉ ଟିକିଏ ବୁଝାଇଦିଏ । ଭାତ ରୁଟି ଚିନି ଚୂଡ଼ା ମୁଢ଼ି ଆଳୁ କନ୍ଦମୂଳ ଶାଗୁ ବାର୍ଲି ପ୍ରଭୃତି ହେଲା ଗୋଟିଏ ଜାତିର ଖାଦ୍ୟପଦାର୍ଥ । ଛେନା ମାଛ ମାଂସ ଅଣ୍ଡା—ଏସବୁ ହେଲା ଆଉ ଗୋଟିଏ ଜାତିର । ଆମ ଦେହରେ ହାଡ଼ ମାଂସ ଚମଡ଼ା ତ ରହିଛି । ସେ ସବୁ ପୁଣି ତିଆରି ହେଉଛି କେମିତି ? ସେହି ତିଆରି କାମ ପାଇଁ ରକ୍ତ

ଦେହରେ ଆଉ ଜାତିଏ ରସ ମିଶିଛି । ସେହି ରସ ଆସୁଛି ଏହି ଛେନା ଜାତୀୟ ଖାଦ୍ୟରୁ । ଆମେ ମାଂସ ଖାଇଲୁ, ମାଛ ଖାଇଲୁ ବା ଛେନା ଖାଇଲୁ । ପେଟ ଭିତରେ ସେଥିରେ ଆଉ ଗୋଟାଏ ପ୍ରକାରର ରସ ମିଶି ତାକୁ ଏମିତି ପାଗ କରିଦେଲା ଯେ, ତା' ଭିତରେ ଅସଲ ସାରତକ ଯାଇ ରକ୍ତ ସହିତ ମିଶିଗଲା । ତାକୁ ହିଁ କାମରେ ଲଗାଇ ରକ୍ତ ଗଢ଼ିଦେଉଛି ଆମ ଦେହର ମାଂସ, ହାଡ଼, ଚର୍ମ—ସବୁ କିଛି ।

ଦକ୍ଷିଣ କୋଣରେ ବାବାଜି ବୋଲି ଯେଉଁ ପିଲାଟି ବସିଥିଲା ସେତେବେଳକୁ ସେ କରିକରି ହୋଇ ହସିବାରେ ଲାଗିଲାଣି । 'କିରେ ହସୁଛୁ କାହିଁକି'—ବୋଲି ଧନବାବୁ ପଚାରିଦେଲାରୁ ସେ ଟିକିଏ ଡରିଗଲା । ଅଜା କହିଲେ—"ଡରିବାର କ'ଣ ଅଛି ? କାହିଁକି ହସିଲୁ କହୁନାହୁଁ ?"

ଟିକିଏ ସାହସ ବାନ୍ଧି ସେ କହିଲା—ମଣିଷ ତ ଜନ୍ମ ହେଲା ବେଳୁ ମାଂସ, ହାଡ, ଚର୍ମ ଅଛି । ତା' ଦେହରେ କ'ଣ କିଏ ନେଇ ସେଗୁଡ଼ା ଖଂଜୁଛି ? ମାଛ, ମାଂସ, ଛେନା ସେଇ କାମ କରୁଛନ୍ତି ଶୁଣି ମୋତେ ହସ ମାଡ଼ିଲା ।

ହରିବାବୁ ତାକୁ ପାଖକୁ ଡାକି ପିଠିରେ ହାତ ମାରିଦେଲେ । କହିଲେ, ତୁ ଟିକିଏ ଠିଆ ହୋଇଯା । ସେତେବେଳକୁ ସମସ୍ତେ ହସିବା ଆରମ୍ଭ କଲେଣି । ଅଜା ବୁଝାଇଲେ—'ଏଇ ବାବାଜି ଯେତେବେଳେ ଜନ୍ମ ହେଲା, ମୁଁ ସେଇଠି ପାଖ ଘରେ ଥିଲି । ସେତେବେଳେ ସେ ଏଡ଼ିକି ଟିକିଏ ହୋଇଥିଲା । ଓଜନ ଖୁବ୍ ହେଲେ ତିନି କେଜି ବା ଛ' ପାଉଣ୍ଡ ହୁଏ କି ନହୁଏ । ଆଜି ସେ କେତେ ଡେଙ୍ଗା ହେଲାଣି ଓ କେତେ ଓଜନ ହେଲାଣି ଦେଖିଲ ।

ସେ ଝଟଟ ଲାଜରେ ବସିପଡ଼ିଲା । ତା' ପିଠି ପୁଣି ଟିକିଏ ଆଉଁସି ଦେଇ ସେ ବୁଝାଇବାରେ ଲାଗିଲେ—'ହାଡ ଯେ ବଢ଼ିଲା—ଅଧିକରୁ ଅଧିକ ମାଂସ ତା' ଦେହରେ ଲାଗିଲା—ଏଗୁଡ଼ା ସମ୍ଭବ ହେଲା କେମିତି ? ମାଆଠାରୁ ପ୍ରଥମେ କ୍ଷୀର ଖାଇଲା । ଆଠ ନ' ମାସ ଯାଏ ଆଉ କିଛି ଖାଇ ନାହିଁ । ସେତେବେଳକୁ ସେ ବେଶ୍ ମୋଟା ହୋଇଗଲାଣି – କେତେ ଗୁଡ଼ାଏ ବଢ଼ିଗଲାଣି । ତା'ପରେ ଖାଇଲା ଗାଈ କ୍ଷୀର । ପରେ କ୍ରମେ କ୍ରମେ ଭାତ, ରୁଟି, ରସଗୋଲା, ମାଛ, ମାଂସ ସବୁ ତ ଖାଇଲା । ଫଳ ହୋଇଛି

ଆଜି ତାହାର ଓଜନ ଗ୍ଭଲିଶ ସେର । ତିନି ସେର ମାଂସହାଡ ଯେ ଗ୍ଭଲିଶ ସେର ହୋଇ ସାରିଲାଣି, ଏଇଥିରୁ କଣ ବୁଝୁନା ରକ୍ତରେ ଯେଉଁ ରସ ଛେନା, ମାଛ, ମାଂସ, ଅଣ୍ଡା, ଡାଲିରୁ ମିଶିଥିଲା ତାରି ସାହାଯ୍ୟରେ ରକ୍ତ ଏହି ସବୁକୁ ଗଢ଼ିଦେଲା ?

"ବାବାଜି ଯଦି ଅଜାଙ୍କ କଥାକୁ ଅପସନ୍ଦ କରିଦେଇ ନଥାନ୍ତା, ଅମେ ଏହି ଅସଲ ପାଠଟି ଶିଖିପାରି ନଥାନ୍ତୁ"—ବୋଲି ବୁଝେଇ କହି ଦେଲାରୁ ସମସ୍ତେ ତା' ସହିତ ଏକମତ ହେଲେ ଭଳି ହୋଇ ମୁଣ୍ଡ ହଲାଇଲେ । ଅଜା ଦେଖିଲେ ଔଷଧଟା ଠିକ୍ କାମ୍ଭ କରୁଛି । ସେଇଠୁ ବୁଝାଇଲେ—ଏଇଠି ତ ଧନବାବୁ ବସିଛନ୍ତି, ତାଙ୍କୁ ପଚ୍ଭର । ତାଙ୍କ ପୁତୁରା ଗୋଲକକୁ ଟାଇଫଏଡ଼ ଜର ହୋଇଥାଏ । ଭଲହେଲା ବେଳକୁ ତା' ଦେହରେ ଆଉ କିଛି ନ ଥାଏ କହିଲେ ଚଳେ—ସତ୍‌ତ କ'ଣ କଏ ହାଡ଼ ଉପରେ ଚମଡ଼ା ଘୋଡ଼ାଇ ଦେଇଛି କି ! ଡାକ୍ତର କହିଲେ ଗୋଲକକୁ ଛେନା, ମାଛ, କଲିଜା, ଅଣ୍ଡା ଭଲ ଚଳ ଖୁଆଅ । ନହେଲେ ତାହାର ପୂର୍ବ ଦେହ ଫେରିବ ନାହିଁ । ସେମିତି କରାଗଲା । ତିନିଟା ମାସରେ ତା' ଦେହ ଯେମିତି ଥିଲା ତା' ଠାରୁ ଅଧିକ ଭଲ ହୋଇଗଲା । ଏହି ଯେଉଁ ଅଧିକ ମାଂସ ତା' ଦେହରେ ଲାଗିଲା, ସେତକ ତ ପୁଣି ଏହି ଛେନା-ଜାତୀୟ ଖାଦ୍ୟରୁ ଆସିଲା ।

ଏତିକିବେଳେ ତାଙ୍କ ଦୃଷ୍ଟି ପଡ଼ିଗଲା ମୂଷା ବୋଲି ତାଙ୍କ ଘରେ ଯେଉଁ ପିଲାଟି ଗଲା ବାର ତେର ବର୍ଷ ହେଲା ଅଛି, ତାହାର ଉପରେ । ସେ ତାକୁ ପାଖକୁ ଡାକି ଠିଆ କରାଇଦେଇ କହିଲେ—ତୋ' ଗୋଡ଼ ଭଣ୍ଡା ଟିକିଏ ଦେଖାଇବୁଟି । ଗଲା ବର୍ଷ ସେ ବାରସିଟା ଧରି କାଠ ଖଣ୍ଡେ ସମାନ କରୁ କରୁ ହଠାତ୍ ସେଇଟା ଆସି ତା' ଗୋଡରୁ ପୁଳାଏ ମାଂସ ଉଠାଇ ଦେଲା । ଏତେ ରକ୍ତ ବହିଲା ଯେ, ଦେଖିଲା ଲୋକେ ଡରିଗଲେ । ତାକୁ ତ ସଙ୍ଗେ ସଙ୍ଗେ ଡାକ୍ତରଙ୍କ ପାଖକୁ ନେଇଗଲେ । ଆଜି ଦେଖୁଛ ସେ ସ୍ଥାନରେ ପୁଣି ମାଂସ ଲାଗିଗଲାଣି । ସେ ମାଂସ ଆସିଲା କେଉଁଠୁ ?

ସେଇଥି ପାଇଁ ମୁଁ କହୁଥିଲି ଯେ ଆମ ଦେହ ଭିତରେ ଗୋଟାଏ ଜୀବନ ତିଆରି କାରଖାନା ଅଛି । ଛେଳିକୁ ମାରି, ମାଛକୁ ମାରି ରାନ୍ଧି ସେହି କାରଖାନା ଭିତରେ ପୂରାଇଦେଲେ ସେଥିରୁ କ୍ରମେ ଆମ ଦେହରେ ଜୀଅନ୍ତା ମାଂସ ଲାଗିଯାଉଛି । ହଁ—ଏକଥା ସତ ଯେ ଛେଳିଟା ଜୀଇ ଯାଉନାହିଁ,

କିନ୍ତୁ ସେ ଯେ ଗୋଟାଏ ପ୍ରକାରର ଜୀଅନ୍ତା ରୂପ ପାଇ ଯାଉଛି, ଏଥିରେ ଆଉ ସନ୍ଦେହ କ'ଣ ଅଛି ?

ପିଲମାନଙ୍କ ମନକୁ ତ ଏହି କଥାଟା ଖବ୍ ପାଇଗଲା—ଧନ ବାବୁଙ୍କ ସଙ୍ଗରେ ତାଙ୍କର ଯେଉଁ ଦୁଇଆଦା ଆସିଥିଲେ, ତାଙ୍କର ମନକୁ ବେଶୀ ପାଇଗଲା । ସେ କହିପକାଇଲେ—'ଆଜି ମୁଁ ଏଠିକି ଆସିଥିଲି ବୋଲି ସିନା ଏତିକି ଶୁଣିଲି ! ଶାସ୍ତ୍ର ପୁରାଣରେ ଲେଖା ଅଛି 'ଅନ୍ନରୁ ପ୍ରାଣୀ ହୁଏ ଜାତ'—ସେହି କଥା ଯେ ସତ, ସେତିକି ଆଜି ଜାଣି ବୁଝିପାରିଲି ।



'ଭଙ୍ଗା ଗଢ଼ା ଚାଲିଛି'

ପାଟିଠାରୁ ତଳପେଟ ଶେଷ ଭିତରେ କେତେ ବା ସ୍ଥାନ ଅଛି— ତାହାର ଭିତରେ ଏତେ କଥା ହୋଇଯାଉଛି ବୋଲି ହୁଏଆଦା ପୁଣି ଯେମିତି କହୁଛନ୍ତି, ହରି ଅଜା ତାଙ୍କର ଆଡ଼କୁ ଚାହିଁ ବୁଝାଇଲେ—ଏହି ଚିତ୍ରଟି ଦେଖ । ତଳେ ଲେଖାଯାଇଛି 'ଭଙ୍ଗାଗଢ଼ା ଚାଲିଛି' । ଏହି ଚିତ୍ରରେ ସୁନାମଣି ବାବୁ ବଡ଼ ମଜାର କଥା ଦେଖାଇ ଦେଇଛନ୍ତି । ତଳ ଅଂଶର ବାଁ ପଟେ ରହିଛି କେତେଗୁଡ଼ିଏ ପୁରୁଣା ଭଙ୍ଗାଘର । ସେଗୁଡ଼ିକରେ ଇଟା ପଥର କାଠ ଲୁହାସବୁ ଲାଗିଛି । କାରିଗରମାନେ ମୂଲିଆମାନେ ଲାଗିପଡ଼ି ସେଗୁଡ଼ିକ ଭାଙ୍ଗୁଛନ୍ତି । ଯେଉଁ ସବୁ ପଥର ଲୁହା ବାହାରୁଛି, ସେଗୁଡ଼ିକ କାଟି ଛୋଟବଡ଼ କରି ଭିନ୍ନ ଭିନ୍ନ ସାଇଜ କରି ଦେଇଛନ୍ତି । ଡାହାଣ ଅଂଶରେ ଗଢ଼ା ଚାଲିଛି ନୂଆ ଘର । ପୁରୁଣା ଘରଗୁଡ଼ିକ ଭିନ୍ନ ଭିନ୍ନ ଉଦ୍ଦେଶ୍ୟରେ ଗଢ଼ାଯାଇଥିଲା । ତେଣୁ ସେଥିରେ ଲାଗିଥିବା କାଠ ବରଗା କବାଟ ଝରକା ଓ ପଥରକୁ ଆଣି ନୂଆଘରେ ସିଧାସଳଖ କାମରେ ଲଗାଇ ଦିଆ ହୋଇ ପାରନ୍ତା ନାହିଁ । ସେଥିପାଇଁ ପ୍ରଥମେ ସେଗୁଡ଼ିକୁ ଭାଙ୍ଗି କାଟିକୁଟି ସଜାଇ ରଖି ଦିଆଯାଉଛି ଓ ତା' ପରେ ଯାଇ ନୂଆଘର ତୋଳିବା କାମରେ ଲଗାଯାଉଛି । ଏଥର ଛବିଟିର ଉପର ଅଂଶ ଦେଖ । ପ୍ରକୃତି ତିଆରି କରି ଦେଇଛି ନାନା ପ୍ରକାରର ଫଳ ଫୁଲ ପରିବା ମାଛ କୁକୁଡ଼ା ଛେଳି ପ୍ରଭୃତି । 'ତିନିଖଣ୍ଡି କାଉଁରୀ ହାଡ଼' ଗପ ଗତ ଡିସେମ୍ବର ଦୁଇ ତାରିଖ ଦିନ ଶୁଣିଥିଲ । ଇଲେକଟ୍ରନ ପ୍ରୋଟନ ନିଉଟ୍ରନକୁ ନାନାପ୍ରକାରେ ସଜାଇ ସେ ତିଆରି କରିଦେଲା ପ୍ରାୟ ଶହେଟି ମୂଳ ଚିଜ ବା ଉପାଦାନ (ଏଲିମେଣ୍ଟ) । ସେହି ଉପାଦାନଗୁଡ଼ିକୁ ଏମିତି ଭାଗ ମାପରେ ମିଶାଇଲା ଯେ, ହଜାର ହଜାର ପ୍ରକାରର ପଦାର୍ଥ ତିଆରି ହୋଇଗଲା । ସେହିଗୁଡ଼ିକ ଭିତରୁ ମିଶାଇ ସଜାଇ ସେ ତିଆରି କରିଦେଇଛି ଏହିସବୁ ଫଳ ଫୁଲ ପରିବା ଧାନ ଗହମ ମାଛ ଇତ୍ୟାଦି । ଆମ ପେଟ ଭିତରେ ସେ ଏମିତି ବ୍ୟବସ୍ଥା କରି ଦେଇଛି ଯେ, ସେଠାରେ ଏହିଗୁଡ଼ିକୁ ଭାଙ୍ଗି ଫେଳାଇ ଦିଆଯାଉଛି । ସେଭଳି କରିଦେଲା ପରେ ପୁଣି ଏମିତି ସଜାଇ ଦିଆଯାଉଛି । ଏମିତି ଖଞ୍ଜା ଦିଆଯାଉଛି ଓ ଏମିତି ସଜାଇ ଦିଆଯାଉଛି ଯେ, ମାଂସ ହାଡ଼ ରକ୍ତ . ଚର୍ମର ଶରୀର-ରୂପୀ ନୂଆ ଘର ତିଆରି ହୋଇଯାଉଛି । ଭାଙ୍ଗିଗଲେ ମରାମତି କରି ଦିଆଯାଉଛି । ଯାହାକୁ ଆଜି ଜୀବନ ତିଆରି କାରଖାନା ବୋଲି କୁହାଯାଉଛି, ତାହାର ନାମ ହଜମି

ହଜମ କାରଖାନା ଓ ଠିକ୍ ତାହାର ନାମ ହେଉଛି "ଭଙ୍ଗାରୁଜା ଓ ନୂଆ ଗଢ଼ା କାରଖାନା" । ଅଙ୍ଗୁର ଭିତରେ ଥିବା ଚିନିକୁ ସେଇଠି କାଢ଼ିନେଇ ରକ୍ତ ଚର୍ମ ରୂପ ଦିଆଯାଉଛି ତ ଛେଳି ମାଂସକୁ ଯାଗ କରି ବଦଳାଇ ବଦଳାଇ ମନୁଷ୍ୟ ମାଂସରେ ପରିଣତ କରି ଦିଆଯାଉଛି । କି ଚମତ୍କାର ବ୍ୟବସ୍ଥା ନ କରିଛି ସେହି ପ୍ରକୃତି ! ହୁନଆଦା' ଯାହା କହୁ ନଥିଲେ—ଅନ୍ନରୁ ହିଁ ପ୍ରାଣୀ ଜନ୍ମ ହୁଏ !

## କେମିତି ଭାଙ୍ଗୁଛି ଗଢ଼ୁଛି

ଦେହ ଭିତରେ ଏହିସବୁ ଭଙ୍ଗାଗଢ଼ା କାମ କେମିତି ଚାଲିଛି ବୋଲି ଜାଣିବାକୁ ପିଲାଙ୍କର ଖୁବ୍ ଆଗ୍ରହ ହେଲାଣି । ଗାଁ ସେ ମୁଣ୍ଡରେ ଯେଉଁ ବଡ଼ ଘରଟି ଅଛି, ସେଠାରୁ ଚାରୋଟି ପିଲା ଆସିଥିଲେ । ସେମାନଙ୍କୁ ନିମନ୍ତ୍ରଣ ହୋଇଥିଲା ଆଜି ସନ୍ଧ୍ୟା ଭୋଜିକୁ । ହରିବାବୁଙ୍କ ଦୃଷ୍ଟି ସେମାନଙ୍କ ଉପରେ ଏତେବେଳଯାଏ ପଡ଼ିନଥିଲା । ପଡ଼ିଯିବାରୁ ପଚାରି ଦେଲେ— ତୁମ ନାଁ ସବୁ କ'ଣ ? ସେମାନେ ଉତ୍ତର ଦେଲା ପୂର୍ବରୁ ମିଚା ମାଡ଼ିବସି କହିପକାଇଲା—ସିଏ ସବୁ ହେଉଛନ୍ତି ପାପା, ଟୁକୁ, ରବି, ବିଷ୍ଟୁ ।

ଅନେକ ବେଳରୁ ପାପା କ'ଣ ପଚାରିବ ବୋଲି ହେଉଥିଲା—କିନ୍ତୁ ଗାଁ ପିଲା ନୁହେଁ ବୋଲି ଭରସିକରି ପଚାରୁ ନଥାଏ । ଏଥର ସାହସ ହୋଇଗଲାରୁ କହିଲା—'ଆମ ଦେହ ଭିତରେ ଏତେ କାମ ହେଉଛି— ଆମେ ତ କିଛି ଜାଣି ପାରୁନାହୁଁ ?'

ହରିବାବୁ ତା' ମୁହଁକୁ ଟିକିଏ ଚାହିଁ ଉତ୍ତର ଦେଲେ—ତୁମକୁ ସବୁ ଭୋକ ହେବ ବୋଲି କଥାଟିକୁ ଶେଷ କରି ଦେଉଥିଲି । ଯଦି ଆଉ ଟିକିଏ ବସିବ, ବୁଝାଇଦେବି ।

ସମସ୍ତେ କହିଉଠିଲେ – ନାଇଁ, ଆମକୁ ଭୋକ ହୋଇନାହିଁ । ଆଉ ଟିକିଏ ଯାଉ—ଅସଲ କଥା ତ ପଡ଼ିନାହିଁ ।

ପିଲାଙ୍କ ସହିତ ସ୍ୱର ମିଳାଇ ହୁନଆଦା କହିଲେ—'ଶୀତଦିନ ରାତି ବୋଲି ସେମିତି ଜଣା ପଡୁ ନାହିଁ—ବେଶୀ ଡେରି ହୋଇ ନାହିଁ । ପିଲାଙ୍କ ପ୍ରସାଦରୁ ଆମେ ବି ଟିକିଏ ଶୁଣିପିବା ।

ଚୁନା ବୋଲି ଯେଉଁ ପିଲାଟି ଏବେ ଅଜାଙ୍କର ହାତବାରିସୀ ଭଳି ହୋଇଛି, ତାକୁ ସେ ବରାଦ ଦେଲେ—'ସେ ଘରେ ଯେଉଁ ଆଲମାରି ଅଛି, ତା' ଭିତରୁ ଏଇ ଏଇ ବହି ନେଇ ଆଇଲୁ ।' ଏହା କହି ସେ ଏଡ଼େ ଟିକିଏ କାଗଜରେ ତାଲିକା କରିଦେଲେ । ଏଣେ ପିଲାଯାକ ସତେ ଯେପରିକି କୁସ୍ତି କରିବେ ବୋଲି ଭିଡ଼ାଭିଡ଼ି ହୋଇ ବସିଲେଣି । ଧନବାବୁ ତାଙ୍କ ପାନଡବାରୁ ଏକାବେଳକେ ଦି' ଖଣ୍ଡ ପାନ ପାଟିରେ ପୂରାଇ ଦେଇ ମୁଣ୍ଡକୁ ଟିଙ୍ଗାରି ଟିଙ୍ଗାରି କହିଲେ—'ଦେଖ, ପିଲାଏ କେମିତି "ମନ-କସରତ" ପାଇଁ ସଜବାଜ ହୋଇ ବସୁଛନ୍ତି ।' ମଧ୍ୟେ ହସିଉଠିଲେ ।

ତା' ପରେ ଆରମ୍ଭ ହେଲା—"ତୁମେ ସବୁ ଯେମିତି ସଜବାଜ ହୋଇ ବସିଲଣି, ସେଥିରୁ ମନେହେଉଛି, ରାତି ପାହିଗଲେ ବି ଗପ ଶୁଣିବ । କିନ୍ତୁ ଆଜି ଠିକେ ଠିକେ କେତୋଟି କଥା କହି ଦେଉଛି । ବାକି ଯେତିକି ରହିଯିବ ଅଉ ଥରେ ଶୁଣିବ ।"

ଆରମ୍ଭରୁ ଗୋଟିଏ କଥା ବୁଝାଇଦେଲେ ଭଲ ହେବ । ଖାଦ୍ୟ ପଦାର୍ଥ ମୋଟାମୋଟି ଭାବରେ ତିନି ପ୍ରକାରର । ଗୁଡ଼, ଚାଉଳ, ଗହମ, ମାଣ୍ଡିଆ, ମକା, ଯଅ, ଆଳୁ, କନ୍ଦମୂଳ ଗୁଡ଼ିକ ଭିନ୍ନ ହେଲେ ଗୋଟିଏ ଜାତିର । ଏଗୁଡ଼ିକୁ "ଶର୍କରା ବର୍ଗୀୟ" ବୋଲି କୁହାଯାଏ । ସେ ଧନ ତ ଶୁଣିଥିଲ ଅଙ୍ଗାର ଉଦଜାନ ଓ ଅମ୍ଳଜାନକୁ ଭିନ୍ନ ଭିନ୍ନ ଭାଗମାପରେ ପାଗକରି ପ୍ରକୃତି ଗୋଟାଏ ପ୍ରକାରର ଖାଦ୍ୟପଦାର୍ଥ ତିଆରି କରିଦେଇଛି । ସେହି ହେଉଛି ଏହି 'ଶର୍କରବର୍ଗୀୟ' । ଇଂରାଜୀରେ ଅଙ୍ଗାରକୁ କାର୍ବନ, ଉଦଜାନକୁ ହାଇଡ୍ରୋଜେନ ଓ ଅମ୍ଳଜାନକୁ ଅକ୍‌ସିଜେନ ବୋଲି କୁହାଯାଏ । ତେଣୁ ଏହି ଶର୍କରବର୍ଗୀୟର ଇଂରାଜୀ ନାମ ହେଲା "କାର୍ବୋହାଇଡ୍ରେଟ" ।

ସେହି ତିନି ଉପାଦାନର ଆଉ ଗୋଟାଏ ଭାଗ ହେଲା ତେଲ, ଘିଅ, ଚର୍ବି । ଏଗୁଡ଼ିକୁ ନାମ ଦିଆଯାଇଛି ସ୍ନେହ, ଚର୍ବି ବା ବସା ଜାତୀୟ ଖାଦ୍ୟ । ପ୍ରକୃତି ପୁଣି କ'ଣ କଲା, ଏହି ତିନି ଉପାଦାନ ସହିତ ଯବକ୍ଷାରଜାନ ମିଶାଇ ଆଉ ଗୋଟିଏ ଭାଗ କରିଦେଲା । ଯବକ୍ଷାରର ଇଂରାଜୀ ନାମ ନାଇଟ୍ରୋଜେନ । ଯେଉଁ ଖାଦ୍ୟ ପଦାର୍ଥରେ ନାଇଟ୍ରୋଜେନ ଭାଗ ଅଛି, ତାକୁ ନାଇଟ୍ରୋଜେନୀୟ ବା ଯବକ୍ଷାରଜାନୀୟ ଖାଦ୍ୟ ବୋଲି କୁହାଯାଏ । ତାହାର ଅନ୍ୟ ନାମ "ପ୍ରୋଟିନ୍" । ଛେନା, ମାଛ, ମାଂସ, ଅଣ୍ଡା ପ୍ରଭୃତି ହେଲା ଏହି ଜାତୀୟ । ପ୍ରୋଟିନ୍‌ରେ ଗନ୍ଧକ ଓ ଫସଫରସ୍ ଭାଗ ମଧ୍ୟ ଥାଇପାରେ ।

ଶର୍କରା ବା ଶ୍ୱେତ ଜାତୀୟ ଖାଦ୍ୟକୁ 'ଶ୍ୱେତସାର' ବୋଲି ଆଉ ଗୋଟିଏ ନାମ ମଧ୍ୟ ଦିଆଯାଇଛି । ଏହାର ଦାୟିତ୍ୱ ହେଲା ଦେହକୁ ଶକ୍ତି ଯୋଗାଇବା କାମ କରିବା ପାଇଁ । ଆଗରୁ ତ କହିଛି, ଜଣେ ଯେତେବେଳେ ଖୁବ୍ ପରିଶ୍ରମ କରେ ଏହି ଜାତିର ଖାଦ୍ୟରୁ ବେଶୀ ଖାଇବା ଦରକାର ପଡ଼େ । କେବଳ ସେତିକି ନୁହେଁ, ଯାହାର ଦେହଟା ଯେତେ ବଡ଼, ତା' ପାଇଁ ଦରକାର ପଡ଼ିବ ସେହି ଅନୁପାତରେ ଅଧିକ ଭାତ ରୁଟି ଇତ୍ୟାଦି । ଗ୍ରେଟ୍ ମଟର ଗାଡ଼ିଟିଏ କଟକରୁ ପୁରୀ ଗଲେ ଯେତିକି ପେଟ୍ରୋଲ ଖର୍ଚ୍ଚ ହେବ, ଗୋଟାଏ ବଡ଼ ଟ୍ରକ ସେତିକି ବାଟ ଗଲେ ତ ଅଧିକ ପେଟ୍ରୋଲ ଖର୍ଚ୍ଚ ହେବ। ହରିବାବୁଙ୍କ ବାଁ ପଟେ ସେତେବେଳକୁ ଆସି ତାଙ୍କର ଜଣେ ଭଣେଇ ନନ୍ଦବାବୁ ବସିଗଲେଣି । ସେ ଦେଖିବାକୁ ଯେମିତି ଡେଙ୍ଗା ସେମିତି ମୋଟା । ତାଙ୍କରି ଆଡ଼କୁ ଅନାଇ ସେ ଯେମିତି ହସି ଦେଇଛନ୍ତି, ଘନବାବୁ ଆଉ ହସ ସମ୍ଭାଳି ନପାରି କହି ପକାଇଲେ—"ତା' ହେଲେ ତୁମେ ହେଲ ମଟରକାର -ସେ ହେଲେ ପାଞ୍ଚଟନିଆ ଟ୍ରକ୍ ?" ପିଲାମାନେ ମଧ୍ୟ ହସି ଉଠିଲେ ।

ପ୍ରୋଟିନ ଜାତୀୟ ଖାଦ୍ୟର ଅସଲ କାମ ହେଲା ଦେହକୁ ବଢ଼ାଇବା ଓ ମରାମତି କରିବା । ମାଂସ ବା ଛେନା ଭଳି ଖାଦ୍ୟ ଯେ ଶକ୍ତି ଯୋଗାଏ ନାହିଁ—ତା' ନୁହେଁ, କିନ୍ତୁ ତାକୁ ସୃଷ୍ଟି କରାଯାଇଛି ଏହି ଖାସ୍ କାମ

ପାଇଁ । ଚର୍ବି ବା ସ୍ନେହଜାତୀୟ ଖାଦ୍ୟ ମଧ୍ୟ ଘିଅ ରୁଟି ଭଳି ଆମ ଦେହକୁ କାମ କରିବା ପାଇଁ ଶକ୍ତି ଯୋଗାଇଥାଏ ।

ଆମେ ଯେତେ ଜାତିର ଖାଦ୍ୟ ଖାଉଛୁ, ସେଗୁଡିକୁ ଏହି ତିନି ଶ୍ରେଣୀରେ ସାଧାରଣତଃ ଭାଗକରି ଦିଆଯାଇଥାଏ । ପ୍ରକୃତି ଏମିତି ଶ୍ରେଣୀ ବିଭାଗ କରୁ କରୁ ଟିକିଏ ହାତ ସଫେଇ ଦେଖାଇ ଦେଇଛି । ସେ କ'ଣ କରିଛି ନା ଏଥିରୁ ସେଥିରୁ ଟିକିଏ ଟିକିଏ ମିଶାଇଦେଇ ନାନା ଜାତିର ଚିଜ ତିଆରି କରିଦେଇଛି । କ୍ଷୀର କଥା ଦେଖିନା, ସେଥିରେ 'ଚିନି' ଭାଗ ଦେଇ ଦେଇଛି—ତେଣୁ ମିଠା ଲାଗେ । ଛେନା ତ ରହିଛି—ତେଣୁ କ୍ଷୀରକୁ ପ୍ରୋଟିନ-ଖାଦ୍ୟ ବୋଲି ମଧ୍ୟ କୁହାଯାଇ ପାରେ । ସେଥିରେ ଲହୁଣୀ ଅଛି—ଘିଅ ମାରିଦେଉ । ତିନି ଜାତିକୁ ମିଶାଇ କ୍ଷୀର ତିଆରି କରାଯାଇଛି । ସେମିତି ମୁଗ ହରଡ ବୁଟ ଭଳି ଡାଲିଜାତୀୟ ଖାଦ୍ୟରେ ଶ୍ୱେତସାର (କାର୍ବୋହାଇଡ୍ରେଟ) ଅଛି ଓ ପ୍ରୋଟିନ ଅଛି । ଚାଉଳରେ ଖୁବ୍ ବେଶୀ ଭାଗ ଶ୍ୱେତସାର—ସାମାନ୍ୟ ପ୍ରୋଟିନ୍ । କିନ୍ତୁ ଗହମ ବେଳକୁ ପ୍ରୋଟିନ ଭାଗ ଟିକିଏ ବେଶୀ ଦେଇ ଦେଲାଣି । ତେଣୁ ଭାତ ଅପେକ୍ଷା ରୁଟିରେ ଅଧିକ ତାକତ ଅଛି ବୋଲି କୁହାହୁଏ । ଏହା ସାଙ୍ଗକୁ ପ୍ରକୃତି କଣ କରିଛିନା ଖାଦ୍ୟପଦାର୍ଥ ସବୁ ତିଆରିକଲା ବେଳେ ଗୋଟା ଗୋଟା-କରେ ଲୁହା, କାଲସିଅମ ପ୍ରଭୃତି ଟିକିଏ ଟିକିଏ ମିଶାଇ ଦେଇଛି । ଅବଶ୍ୟ କେଉଁଥିରେ ଟିକିଏ ବେଶୀ ତ କେଉଁଥିରେ ଟିକିଏ କମ୍ ମିଶାଇଛି । ସବୁ କରିସାରି କେତେଗୁଡ଼ିଏ ଖାଦ୍ୟରେ ଗୋଟାଏ ବଡ଼ିଆ ଚିଜ ପରଖି ଦେଇ ଦେଇଛି । ତାକୁ କୁହନ୍ତି ଭିଟାମିନ ବା ଖାଦ୍ୟପ୍ରାଣ ।

ଖୁବ୍ ତରତରରେ ଏତକ କହିଦେଇ ସାରି ସେ ପୁଣି ଟିକିଏ ଯୋଗ କରିଦେଲେ—ଏଥର ତ ଜାଣିଲ ଯେ ଖାଦ୍ୟର କାମ ହେଉଛି ଦୁଇଟି । ଗୋଟିଏ ହେଲା ପ୍ରାଣୀକୁ ଶକ୍ତି ଯୋଗାଇବ । ଅନ୍ୟଟି ହେଲା ସେ ଯେମିତି ବଢ଼ିବ ଓ ତା' ଦେହ ମରାମତି ହେବ, ସେ କଥା ମଧ୍ୟ ଦେଖିବ

'ଶୀଘ୍ର ଏହି ଗପ କହିବା କାମ ଶେଷ କଲେ ପିଲାଏ ଖାଇବେ'— ବୋଲି ଘର ଭିତରୁ ଏତିକି ଟିକେ ଶୁଣାଗଲା । ତେଣୁ ହରିବାବୁ ତରତର ହୋଇ ଆରମ୍ଭ କଲେ—'ହଉ, ଶୀଘ୍ର ଶେଷ କରିଦେବା । ପ୍ରଥମେ ଗୋଟିଏ କଥା କହିଦିଏ । ହଜମ କାରଖାନା ଭିତରେ ଖାଦ୍ୟ ପ୍ରଥମେ ପଶିଥାଏ ପାଟି ବାଟେ । ଯାହାକୁ ପାଟି ବୋଲି କୁହାଯାଏ, ତାକୁ ହିଁ ମୁହଁ ଗୁମ୍ଫା ବା ମୁଖଗହ୍ୱର ନାମ ଦିଆଯାଇଛି । ସେହି ଗୁମ୍ଫାର ଦୁଇ ପଟେ ଗାଲ ଓ ସାମନାରେ ଦୁଇ ଓଠ । ଗାଲ ଓ ଓଠ ପାଖକୁ ଦୁଇ ଧାଡ଼ି ପହରିବାଲା ରହିଛନ୍ତି । ସେହି ପହରିବାଲାଙ୍କ ନାମ ଦାନ୍ତ । ହଜମ କାରଖାନାଟି ହେଲା ମନୁଷ୍ୟର ସ୍ୱାସ୍ଥ୍ୟ ଦୁର୍ଗ । ଦାନ୍ତଗୁଡ଼ିକ ସେହି ଦୁର୍ଗକୁ ଜଗିଲା ଭଳି ରହିଥିବାରୁ ସେମାନଙ୍କୁ "ସ୍ୱାସ୍ଥ୍ୟ ଦୁର୍ଗର ପ୍ରହରୀ" ବୋଲି କହାଯାଏ । ଏଭଳି କଡ଼ା ବ୍ୟବସ୍ଥା ରହିଛି ଯେ, ଦୁଇ ଜଣଙ୍କଠାରୁ ପାସ୍ ଖଣ୍ଡେ ଖଣ୍ଡେ ନ ପାଇଲା ପର୍ଯ୍ୟନ୍ତ ସେହି ପ୍ରହରୀମାନେ ଗୁମ୍ଫା ମୁହଁକୁ ଆଦୌ ମେଲା କରିବେ ନାହିଁ । ସେହି ଦୁଇ ଜଣ ହେଉଛନ୍ତି ଦୁଇ ଇନ୍ଦ୍ରିୟ — ଆଖି ଓ ନାକ । ଆଖିର ବାହାଦୁରୀ ହେଲା ସେ ଦୂରରୁ ଜାଣି ପାରିବ ଯେଉଁଟି କଥା କୁହାଯାଉଛି ସେଇଟି ପ୍ରକୃତରେ ଖାଦ୍ୟ କି ନୁହେଁ । ସେ ଯଦି କହିଦେଲା--'ନାଁ—ଏଇଟା ଆଦୌ ଖିଆଯିବା ଯୋଗ୍ୟ ନୁହେଁ' ତେବେ କଥା ସରିଗଲା । ଯଦି ସେ କହିଲା—'ହଁ, ଇଏ ହେଉଛି ଖାଦ୍ୟ' ତେବେ ଯାଇ ପାଟି ଭିତରକୁ ପଶିବାର ପ୍ରଥମ ପାସ୍ ମିଳିଗଲା । ସେଇଥି-ପାଇଁ କୁହାଯାଏ, 'ଯାହା ଆଖିକୁ ରୁଚେନାହିଁ ତା' କଣ ପାଟିକୁ ରୁଚିବ ?' ଏଇଟି ଖାଦ୍ୟ କି ନୁହେଁ—ଆଖି କେବଳ ସେତିକି ଯେ ଦେଖେ ଏମିତି ଖବର ନାହିଁ । ଦେହ ପାଇଁ ତାହା ଉପକାରୀ କି ଅପକାରୀ ସେ କଥା ମଧ୍ୟ ଖବରକୁ ନେଇ ଆଖି ତାର ପାସ୍ ଦେବା ନ ଦେବା କଥା ସ୍ଥିର କରେ ।

ତାହାପରେ ଆସିଲା ନାକ ପାଳି । ଏହି ଇନ୍ଦ୍ରିୟର ଛୁଙ୍ଘି ମାରି ପରଖ ଖବର ଅତି ଅଦ୍ଭୁତ । ଟିକିଏ ଦୂରରୁ ମଧ୍ୟ ସେ ଜାଣି ପାରିବ, ଖାଦ୍ୟଟି ପେଟକୁ ଯିବା ଉପଯୋଗୀ କି ନୁହେଁ । ସେତିକିବେଳେ ସେ ହୁଏତ କହିଦେବ ଯେ, ଆଖି ଠିକ୍ ଠିକ୍ ଜାଣି ପାରିନଥିଲା । ଦୂରରୁ ଯଦି

ଭଲ ଖବରରେ ବାର ନ ପାରନ୍ତି, ତେବେ ପାଖରୁ ଜାଣିବାକୁ ଚେଷ୍ଟାକରେ ଜିନଷଟି କି ଅବସ୍ଥାରେ ଅଛି ବୋଲି । ବାସି କି ସଜ, ଟଟକା କି ପଚସ୍ଥ, ଅନ୍ୟ କୌଣସି କାରଣରୁ ଗନ୍ଧଆ ଇତ୍ୟାଦି ନାନା ଦିଗରୁ ନାକ ଲଗିଯାଏ ପରୀକ୍ଷା କରିବାରେ । ଏଭଳି ପରୀକ୍ଷା କରିବା ପାଇଁ ତାକୁ ପ୍ରକୃତି ଅଦ୍ଭୁତ ଶକ୍ତି ଦେଇଛି । ହାଣ୍ଡିଏ କ୍ଷୀର ତା ପାୟସରେ ଦି’ ବୁନ୍ଦା କିରାସିନ ଯଦି ପଡ଼ିଯାଇଥିବ, ନାକ ତାକୁ ଅତି ସହଜରେ ବାରିଦେବ । ତଳେ ଟିକିଏ ଯଦି “ଲଗି” ବା ପୋଡ଼ି ଯାଇଥିବ, ନାକ କହିଦେବ ତରକାରିର ଅବସ୍ଥା କଣ । ବଢ଼ିଗଣ୍ଠା ଟିକିଏ କୁହୁଳି ଗଲେ ନାକ ତାକୁ ନାପସନ୍ଦ କରିଦେବ । ଆଖିକୁ ରୁଚୁଥିବା ସୁନ୍ଦର ପାଚିଲା ଫଳଟି ଟିକିଏ ପଚିଯାଇଛି କି ନାହିଁ ନାକ ହିଁ କହିଦେବ । ଯାହା ହେଉ, ଶେଷରେ ଯଦି ସେ ପାଶ୍ ଖଣ୍ଡେ ଦେଲା, ଅର୍ଥାତ୍ କହିଦେଲା ଯେ “ଏଇଟି ଖାଇଲେ ଚଳିବ” ତେବେ ଯାଇ “ହଜମ ଦୁର୍ଗ”ର ଦ୍ୱାର ଖୋଲିବ ।

ସେଇଠି କିନ୍ତୁ କଥା ସରିଲା ନାହିଁ । ସର୍ତ୍ତ ରହିଛି ଯେ ତୃତୀୟ ଜଣକ ଅର୍ଥାତ୍ ଜିଭ ଶେଷ ମଂଜୁରୀ ଦେବ । ସେ ପରୀକ୍ଷା କରି ଦେଖିବ, ଖାଦ୍ୟଟି ଦେହ ଭିତରକୁ ଯିବା ଉଚିତ କି ନୁହେଁ । ଅତି କଟୁ ବା ଅତି ତିକ୍ତ ହୋଇଥିଲେ ସେ ଥୁ ଥୁ କରି ଫୋପାଡ଼ି ଦେବ । ପ୍ରହରୀମାନଙ୍କୁ ହୁକୁମ ଦେଇଦେବ ଦ୍ୱାର ବନ୍ଦ କରିଦେବା ପାଇଁ । ଆଖି ଓ ନାକଙ୍କୁ ଠକି କୌଣସି ଚୋର ଦୁଏତ ପାଟି ଭିତରେ ପଶିଯାଉଛି । ସେମାନଙ୍କୁ ଧରି ପକାଇବ ଏହି ଜିଭ । ତା’ ଠାରୁ ଯଦି ପାଶ୍ ଖଣ୍ଡେ ମିଳିଲା, ତେବେ ଯାଇ ପେଟ ଭିତରକୁ ଯିବାର ପ୍ରଶ୍ନ ଉଠିବ ।

ଏତେ କଟକଣା ସତ୍ତ୍ୱେ ଆଉ ଗୋଟିଏ କଥା ରହିଛି ଆଖିକୁ ଭଲ ବୋଲି ଦେଖାଯାଉଛି, ନାକ କହିଦେଉଛି ଆପତ୍ତି ନାହିଁ, ଜିଭ କହିଲାଣି ବେଶ୍ ସୁଆଦିଆ—ତଥାପି କୌଣସି ଗୋଟାଏ ଚୋର ଦୁଏତ ଜଣକର ଦେହ ପାଇଁ ଖରାପ । ଏଭଳି ଏକ ଗୁରୁତ୍ୱପୂର୍ଣ୍ଣ ନିଷ୍ପତ୍ତି ଭାର ରହିଛି ମସ୍ତିଷ୍କ ଉପରେ । ବହୁ ପୂର୍ବରୁ କାନ ଅନେକ କଥା ଶୁଣିଛି, ଆଖି ଦେଖିଛି, ଜିଭ ସୁଆଦ ବାରିଛି, ନାକ ଗନ୍ଧ ବାରିଛି—ଏମାନେ ସମସ୍ତେ ମସ୍ତିଷ୍କକୁ

ସବୁକଥା ଜଣାଇ ଦେଇ ନିଜର କର୍ତ୍ତବ୍ୟ ଶେଷ କରି ଦେଇଛନ୍ତି । ଆଜି ଯେତେବେଳେ ଗୋଟିଏ ଖାଦ୍ୟ ପଦାର୍ଥ ପେଟ ଭିତରକୁ ଯିବା ପ୍ରଶ୍ନ ଉଠୁଛି, ମସ୍ତିଷ୍କ ଶେଷ ବିଚାର କରୁଛି ତାହା ଦେହ ପାଇଁ ଉପକାରୀ କି ନୁହେଁ । ତା' ମତରେ ଯଦି ଅପକାରୀ ବୋଲି ଠିକ ହେଲା, ତେବେ ସେ ପରାମର୍ଶ ଦେଉଛି 'ଭିତରକୁ ଛାଡ଼ ନାହିଁ ।'




ମୁଖଗହ୍ୱର

"ଖାଇଦେବାଟା ଖୁବ୍ ସହଜ ବୋଲି ଭାବୁଥିଲି—ତା' ଭିତରେ ପୁଣି ଏତେ କଥା ଅଛି !" ବୋଲି ଲୁଟୁ ଯେମିତି କହିପକାଇଛି, ସମସ୍ତେ ହସିଉଠିଲେ ।

ହରି ବାବୁ ଟିକିଏ ମୁ ରୁକି ହସି ତା' ଆଡ଼କୁ ଗ୍ରହିଁ କହିଲେ—'ହସଚକ ସାରି ହଅ ନାହିଁ—ତା' ପାଇଁ ଆହୁରି ବେଳ ଆସୁଛି ।'

ତାହାପରେ ବାହାର କଲେ ଗୋଟିଏ ଚିତ୍ର । ତଳେ ଲେଖା ଯାଇଛି—"ମୁଖଗହ୍ୱର" । ବଡ଼ ଓସାରିଆ ବହିଟାଏ—ଛବିଟା ବଡ଼—ଦୂରରୁ ପିଲାଏ ଦେଖି ପାରୁଛନ୍ତି । ବୁଝାଇଲେ—ଏହାର ଭିତରେ ଆଠଟି କଥା ଲକ୍ଷ୍ୟ କର । ପ୍ରଥମେ ଦୁଇଟା ମାଢ଼ି, ସେଥିରେ ଖଞ୍ଜା ଯାଇଛି ଦୁଇ ପାଟି ଦାନ୍ତ, ଗୋଟିଏ ଜିଭ, ଜିଭ ମୂଳରେ ଘଣ୍ଟିକାଟିଏ, ଓଠ ଓ ଗାଲ ଭିତରର ଓଦାଳିଆ ପରଦା, ମୁହଁଗୁମ୍ଫାର ଉପର ଗ୍ରୁତ ତାଳୁ-ହାଡକୁ ବେଶ୍ ଟାଣ ଲାଗେ, ତା' ଭିତର ବା ପଛ ଅଂଶ ଗ୍ରୁତ ନରମ । ତାଳୁ, ଗୁମ୍ଫା ମୂଳରେ ତଳକୁ ଗୋଟାଏ ବାଟ । ତୁମ ସମସ୍ତଙ୍କର ତ ପାଟି ଅଛି । ଆଁ କରିଦେଇ ଭିତରେ ହାତମାରି ମିଳାଇ ନିଅ । ତା' ନକରି ଏ ତା' ପାଟି, ସେ ଯା ପାଟି ଦେଖିଲେ ବି ଜାଣିପାରିବ । ଚିତ୍ରରେ କ'ଣ ହୋଇଛି କି, ଗାଲରେ ଦୁଇ ଓଠର ମୂଳ ଯେଉଁଠି ଭେଟ ହୋଇଛି, ସେହି ଅଂଶଟିକୁ କାଟି ଦେଲାଭଳି କରି ଦିଆଯାଇଛି । ସେଥିପାଇଁ ଟିକିଏ ପରିଷ୍କାର ଭାବରେ ସବୁ କଥା ଦେଖାଯାଉଛି । ସମସ୍ତେ ଚିତ୍ରଟିକୁ ଲକ୍ଷ୍ୟ କର । ଯେଉଁଠି ୧, ୨, ୩, ୪, ଆଦି ଚିହ୍ନ ଦିଆଯାଇଛି, ସେଇଠି ଗାରଟିଏ ଲେଖା ଟାଣି ଦିଆଯାଇଛି ଗୋଟିଏ ଗୋଟିଏ ସ୍ଥାନକୁ । ପ୍ରତ୍ୟେକ ସ୍ଥାନର ନାମ ସେହି ସଂଖ୍ୟା ଅନୁସାରେ କହିଯାଉଛି । ୧—ଉପର ଓଠ, ୨—ଓଠ ବାନ୍ଧ, ୩—ମାଢ଼ି, ୪—ଉପର ପାଟି ଦାନ୍ତ, ୫—ଟାଣ ତାଳୁ, ୬—ନରମ ତାଳୁ, ୭—ଜିଭ ତାଳୁ ମେହେରବ, ୮—ତାଳୁ ଗ୍ରସମ୍ମ (ଫାରିଙ୍କସ୍ ମେହେରବ) ୯-ଟନ୍‌ସିଲ୍, ୧୦—ଗାଲର ଗୋଟାଏ ଅଂଶ, ୧୧—ତଳପାଟି ଦାନ୍ତ, ୧୨—ମାଢ଼ି, ୧୩—ତଳଓଠ, ୧୪—ତଳ ଓଠ ବାନ୍ଧ, ୧୫—ଜିଭ, ୧୬—ଗଳତୋରଣିକା, ୧୭—ଘଣ୍ଟିକା (ଉଭୁଲା) ।

ଏହିଠାରେ ପାଞ୍ଚଟା କାମ ହୋଇଯାଏ । ଜିଭ ଗୁଡ଼ିଦିଏ, ଦାନ୍ତ ଚୋବାଇ ଚୋବାଇ କରି ପେଷି ପକାନ୍ତି, ଲାଳ ମିଶିଯାଇ ଗୋଟାଏ ପ୍ରକାର ରସାୟନିକ ପାକ କରିଦିଏ, ଜିଭ ତାକୁ ଗୋଲେଇ ଗୋଲେଇ ମଣ୍ଡି ମାଣ୍ଡି ଗୁଣ୍ଡା ବା ଗୋଲାକାର କରିଦିଏ, ଗଳାର ମାଂସପେଶୀ ଗିଳି ଦିଅନ୍ତି । ମନେ ରଖିଥାଅ, ଏହି ପାଟି ଭିତରେ ଥିବା ଯାଏ ଖାଦ୍ୟ ଉପରେ ଆମର ଅକ୍ତିଆର ଥାଏ । ଇଚ୍ଛା କଲେ ଆମେ ଗିଳିବା ବା ବାହାରକୁ କାଢ଼ି ପକାଇବା, ଭଲକରି ଚୋବାଇ ପାରିବା, ଇଚ୍ଛାମତେ ଲାଳ ମିଶାଇ ରସାୟନିକ ପାକରେ ସାହାଯ୍ୟ କରି ପାରିବା ଇତ୍ୟାଦି । କିନ୍ତୁ ଗଳା ତଳକୁ ଚାଲିଗଲା ପରେ ଆମର ଆଉ ତା' ଉପରେ ଅକ୍ତିଆର ରହେ ନାହିଁ । ତେଣୁ ଏହିଠାରେ ଯାହା ସବୁ ଘଟିଯାଉଛି ସେ ବିଷୟରେ ଠିକଏ ଭଲ ଭାବରେ ବୁଝାଇଦିଏ ।

ନନ୍ଦ ବାବୁ ଦେଖିଲେ, କଥାଟା ଲମ୍ବି ଯାଉଛି । ବେଶୀ ବଢ଼ି ପାଠି ନକରି କହିଦେଲେ—'ପାଟିରେ ପଶିଲେ ତ ଚୋବେଇ ଗିଳି ଦେଲ—ଆଉ ସେଥିରେ ବୁଝେଇବା କଥା ରହିଲା କ'ଣ ?'

ତାଙ୍କର କଥା ସମସ୍ତଙ୍କ ମନକୁ ପାଇଯାଉଛି ଦେଖି ହରି ଅଜା ଠିକଏ ଜୋର ଦେଇ କହିଲେ—'ଓଃ, କଥାଟା ଯଦି ଏତେ ସହଜ ହୋଇ ଥାଆନ୍ତା, ପାଟି ଭିତରେ ଦାନ୍ତ ଜିଭ ତାଳୁ ପ୍ରଭୃତି ଗଢ଼ିବା ବେଳେ ପ୍ରକୃତି ବିଚାରୀକୁ ଏତେ ବୁଦ୍ଧି ଖର୍ଚ୍ଚ କରିବାକୁ ପଡ଼ିଥାଆନ୍ତା କାହିଁକି ? ପୁଣି ଏତେ କିସମର ଦାନ୍ତ ତିଆରି କରିଥାଆନ୍ତା କାହିଁକି ?

ଏଇ ଛବିଟି ଦେଖ—







ଉପରେ ଦେଖୁଛ ଖାଦ୍ୟରୁ ଖଣ୍ଡେ କାଟି ପକାଉଛୁ। ସେଇ କାମ ଯେଉଁ ଦାନ୍ତ କରୁଛନ୍ତି, ତାଙ୍କୁ କୁହାଯାଏ ଛେଦକ, ଛେଦନ ଦାନ୍ତ ବା କଟା ଦାନ୍ତ (ଇନ୍‌ସିଜର)। ତା' ତଳେ ସେଇ ଖାଦ୍ୟକୁ ଖଣ୍ଡ ଖଣ୍ଡ କରି ଦିଆଯାଉଛି। ସେହି ଉଦ୍ଦେଶ୍ୟରେ ସେହି ଦାନ୍ତସବୁ ଅଛି। ସେଗୁଡ଼ିକୁ ନାମ ଦିଆଯାଇଛି ଭେଦକ ବା କାନାଇନ୍। ତା' ତଳେ ଚକରେ ପେଷିଲା ଭଳି କରିପକାଉଛନ୍ତି କଳ-ଦାନ୍ତ ତାଙ୍କୁ ନାଁ ଦିଆଯାଇଛି ଚର୍ବଣ ବା ଗେଞ୍ଜିବା ଦାନ୍ତ (ମୋଲାର)। ଏଇଠି ତ ଦେଖିଲ ତିନି ପ୍ରକାର ଦାନ୍ତ ଖଞ୍ଜା ଗଲା ତିନି ପ୍ରକାରର କାମପାଇଁ। ତା' ଯଦି କରାଯାଇ ନଥାନ୍ତା, ଆମେ କ'ଣ ସହଜରେ ଖାଇ ପାରନ୍ତେ? ସେ ଦିନ 'ମାଭେଗ ଦେବଦ୍' ବୋଲି ଖଣ୍ଡିଏ ବହି ପଢ଼ୁଥିଲି। ସେଥିରେ ଦାନ୍ତ ବିଷୟରେ ବହୁତ କଥା ଲେଖାଯାଇଛି। ଗୋଟିଏ କଥା ମୋର ବେଶ୍ ମନେରହିଛି। ଗୋଟିଏ ସ୍ଥାନରେ କୁହାଯାଇଛି—'ମନେରଖ—ପେଟ ଭିତରେ ଦାନ୍ତ ନାହିଁ। ଆମେ ଯଦି ପାଟିରେ ଥିଲାବେଳେ ଖାଦ୍ୟକୁ ଭଲକରି ଗେଞ୍ଜିବ ଇ ନଥିବା—ଖଣ୍ଡ ଖଣ୍ଡ କରି ଗିଳିଦେବା, ପେଟ ଭିତରେ ତାକୁ ଆଉ କାଟିବ, ଛିଣ୍ଡାଇବ, ପେଷିବ କିଏ? ସେମିତି ନ କଲେ ତା' ଭିତରେ ହଜମ ରସ ତା ମିଶିବ କିପରି? ଦାନ୍ତକୁ ମାଢ଼ି ଦେହରେ ମଜବୁତ କରି ପୋତି ଦିଆ ଯାଇଛି—ତା' ନ ହେଲେ ପଚିଶ ଷାଠିଏ ବର୍ଷ କାଳ ସେ ଏତେ ଗେଞ୍ଜିବାଇବା କାମ କରନ୍ତା କିପରି? ବାହାରକୁ ଯେତିକି ଅଂଶ ଦେଖା ଯାଉଛି ମାଢ଼ି ଭିତରେ ତା' ଠାରୁ ଢେର୍ ଅଧିକ ପୋତା ଯାଇଛି।

ଏଭଳି ଠାଣି କରି ପୋତି ଦିଆହୋଇଛି ଯେ, ଜଣେ ଜଣେ ଦାନ୍ତରେ ଶୁଖିଲା ନଡ଼ିଆ ଛଡ଼ାଇ ପକାନ୍ତି । ଏହି ଗ୍ରୋଟ ଛବିରେ ଦେଖାଇ ଦିଆ-




ହୋଇଛି ଦାନ୍ତକୁ କିଭଳି ତିନି ଭାଗରେ ବିଭକ୍ତ କରାଯାଇପାରେ । ଯେଉଁ ଅଂଶଟିକୁ ମାଡ଼ି ଉପରେ ବା ବାହାରେ ଦେଖୁଛୁ ତାହାର ନାମ ମୁକୁଟ ବା ଛତି । ଯେଉଁ ଅଂଶ ମାଡ଼ି ଭିତରେ ପୋତା ହୋଇଛି, ତାହାର ନାମ ମୂଳ । ଯେଉଁଠି ମୁକୁଟ ଶେଷ ହୋଇ ମୂଳ ଆରମ୍ଭ ହୋଇଛି ତାହାର ନାମ ବେକ ।

ଆଉ ଗୋଟିଏ କଥା ଭଲ ଭାବରେ ମନେରଖ । ତାକୁ ଚିମୁଟିଲେ କାଟେ ନାହିଁ ବୋଲି ଭାବନାହିଁ ଯେ, ଦାନ୍ତଟି ପଥର ବା ଲୁହା ଭଳି ନିର୍ଜୀବ । ତାକୁ ବଞ୍ଚାଇବା ପାଇଁ ତା' ଭିତରକୁ ମୂଳ ବାଟେ ରକ୍ତନଳୀ ସବୁ ଆସିଛି । ଦେହର ଅନ୍ୟ ଅଂଶକୁ ଯେପରି ଟେଲିଗ୍ରାମ୍ ତାରରୂପୀ ନଳ ବା ସ୍ନାୟୁ ଖଞ୍ଜା ଯାଇଥାଏ, ଦାନ୍ତ ଭିତରକୁ ମଧ୍ୟ ସେହିଭଳି ଖଞ୍ଜା ଯାଇଛି । ଏହି ସବୁ ରକ୍ତନଳୀ ଓ ସ୍ନାୟୁ (ନର୍ଭ) ଯିବା ପାଇଁ ତା' ମୂଳରୁ ଦାନ୍ତ ଭିତରେ ଉପର ଆଡ଼କୁ ଗୋଟିଏ ଲେଖା କେନାଲ ରହିଛି । ସେହି କେନାଲର ଉପର ଶେଷ ମୁଣ୍ଡ ଓସାରିଆ ହୋଇ ଖୋପ ତିଆରି ହୋଇଯାଇଛି; ସେହି ଖୋପ ଭିତରେ ମଂଜ ଅଛି । ତୁମ୍ଭ କହିବ ଚକ ଭଳି ଆମ ଦାନ୍ତଗୁଡ଼ିକ ନିର୍ଜୀବ ହାଡ଼ଅର ନୁହନ୍ତି – ସବୁଗୁଡ଼ିକ ଜୀଅନ୍ତା ହାଡ଼ଆର । ବାହାରର ଗୁପ, ଥଣ୍ଡା, ଗରମ ଇତ୍ୟାଦି ବାରବାର ଶକ୍ତି ଦାନ୍ତର ରହିଛି । ହାତ, ଗୋଡ଼ ଯେମିତି ଜୀଅନ୍ତା— ଦାନ୍ତ ମଧ୍ୟ ସେମିତି ଜୀଅନ୍ତା । ହାତ ଗୋଡ଼କୁ ସୁସ୍ଥ ରଖିବା ପାଇଁ ଆମେ ବ୍ୟାୟାମ କରୁଛୁ—ସେଭଳି କଲେ ଯାଇ ବେଶୀ ବେଶୀ ରକ୍ତ ମାଂସପେଶୀ ଭିତରକୁ ଆସେ । ଦାନ୍ତ ଯଦି ବ୍ୟାୟାମ ନକରେ, ସୁସ୍ଥ ରହିବ ନାହିଁ— ତା' ଭିତରକୁ ବେଶୀ ବେଶୀ ନଆ ରକ୍ତ ଆସିବ ନାହିଁ । ଚୋବାଇବା ଦ୍ୱାରା ତାହାର ବ୍ୟାୟାମ ହୁଏ । ଟାଣ ଖାଦ୍ୟ ଖାଇଲେ ଅଧିକ ବ୍ୟାୟାମ ହେବାର କଥା—କାହିଁକି ନା ବେଶୀ ଚୋବାଇବାକୁ ପଡ଼େ । ଖଡ଼ା,

ସଜନା ଛୁଇଁ, ପୋଇଖାଡ଼, ଡିଆଜ ଭଳି ଜିନିଷ ସତେ ଯେପରିକି ତିଆରି ହୋଇଛି ଦାନ୍ତକୁ ବ୍ୟାୟାମ କରାଇବା ପାଇଁ । ଯେଉଁମାନେ ଅତି ନରମ ଖାଦ୍ୟ ବହୁ କାଳ ଧରି ଖାଆନ୍ତି—ଚୋବାଇବା ଦରକାର ହୁଏ ନାହିଁ, ସେମାନଙ୍କ ଦାନ୍ତ ଶୀଘ୍ର ଦୁର୍ବଳ ହୋଇଯାଏ ।

ପୂର୍ବେ ଲୋକେ ଏମିତିକା ଖାଦ୍ୟ ଖାଉଥିଲେ ଯେ ବେଶୀ ବେଶୀ ଚୋବାଇବାକୁ ପଡ଼ୁଥିଲା । ଚୋବାଇଲା ଫଳରେ ଦାନ୍ତ ମଜବୁତ୍ ହେବା ସଙ୍ଗେ ସଙ୍ଗେ ଚକ୍‌ଚକ ଓ ସଫା ରହୁଥିଲା । ଦୁଇ ଦାନ୍ତ ମଝିରେ ଅଇଁଠା ଲାଗି ରହୁନଥିଲା ।

ସେଇଠୁ ଆସିବା ଜିଭ ପାଖକୁ । ପାଟି ଭିତରେ ସତେ ଯେପରିକି ଗୋଟାଏ ରୋଷା-ବଢ଼ା କାମ ହେଉ ବୋଲି ପ୍ରକୃତିର ଇଚ୍ଛା ଥିଲା । ସେଥିପାଇଁ ଚଟୁ, ଶିଳ, ବେଲଣା କାଠି, ବେଲଣା ପେଡ଼ି, ଡଙ୍କା, କରଚୁଲି—ସବୁ କିଛି ସେ ତା'ର ଭିତରେ ଖଂଜି ଦେଇଛି । ପାଟି ଭିତର ଉଣ୍ଡାଳିଲେ । ସେ ସବୁ କିଭଳି ଖଂଜା ଯାଇଛି ଦେଖିବ ।


( ଜିଭ )

ଲୁଟେଇ ଏ ପର୍ଯ୍ୟନ୍ତ ଠିକଏ ହେଲେ ପାଟି ଫିଟାଇ ନଥିଲା । କହି ଉଠିଲା—''ଅଜା, ଆମ

ପାଟିରେ ତ ଏ ସବୁ ନାହିଁ—ତମ ପାଟିରେ କିଷ୍ଟପ୍ପ ଅଛି । ତା' ସାଙ୍ଗକୁ ତମ ପାଟିରେ ବୋଧହୁଏ ବାଟ୍ଲିଖଣ୍ଡା ଅଛି—ନ ହେଲେ କଥାରେ କେମିତି ବ ଟଳ ବାଜୁ ନଥାନ୍ତା !" ସମସ୍ତେ ହସିଉଠିଲେ । ଅଜା କହିଲେ—"ମୁଁ ସତ କହୁଛି । ପ୍ରକୃତରେ ଏମିତି ବାହାଦୁରୀ ଡାଏ ସେ ଚଟ, ଡଙ୍କା, ଶିଳ, ବେଲଣା-ପେଡ଼ି ଆଦି ସମସ୍ତଙ୍କ ଗୁଣ ଗୋଟିଏ ଅଙ୍ଗରେ ଭରିଦେଇଛି । ତା'ର ନା ଜିଭ । ଗୋଟିବାଉଳିବେଳେ ଟିକିଏ ଲକ୍ଷ୍ୟ କଲେ ଜାଣିପାରିବ, ଦାନ୍ତ ପାଖକୁ ଖାଇବା ଜିନିଷ ସେ ନେଇ ବଢ଼ାଇ ଦିଏ ପେଷିବା ପାଇଁ—ଛେଦିବା ପାଇଁ । ଖଣ୍ଡେ ଆଳୁକୁ ଦାନ୍ତ ଦି' ତିନ ଖଣ୍ଡ କରିଦେଲାଣି — କିନ୍ତୁ ତାହା ପିଠଉ ଭଳି ନରମ ହୋଇ ଯାଇନାହିଁ । ତାକୁ ଦେହରେ ଜିଭ ତାକୁ ଚିପି ଦେଇ ବାଟିଲି ଭଳି କରିଦେଲା । ପାଟିର ଭିନ୍ନ ଭିନ୍ନ ଅଂଶକୁ ଖାଦ୍ୟକୁ ନେଇ ଯିବା'—ନେଇ ଆସିବା କାମ ତ ସେଇ କରୁଛି । ଜିଭର ସାହାଯ୍ୟ ବିନା ଗୋଟିବାଉଳିବା କାମଟି ଦାନ୍ତ ସୁରୁଖୁରୁରେ କରିପାରନ୍ତା ନାହିଁ । ଟିକିରେ ବାଟିଲିଭଳି କରିବା ଦରକାର ପଡ଼ୁଥିବାରୁ ଜିଭ ଉପରପାଖ କେମିତି ରୁଆ ରୁଆ ହୋଇଛି ଆରସିରେ ଦେଖିଲେ ଜାଣିପାରିବ । ଏହି ଶରୀରରେ ମଧ୍ୟ ଦେଖ । ସେମିତି ନହୋଇ ଯଦି ଜିଭଟା ଏକାବେଳକେ ଚିକଣିଆ ହୋଇଥାଆନ୍ତା ପାଟି ଭିତରେ ଏହି ବଟାବଟି ଘଣ୍ଟାଘଣ୍ଟି କାମ ହୋଇପାରନ୍ତା ନାହିଁ । ଏ କଥାଟି କେତେ ଦୂର ସତ, ତୁମମାନଙ୍କୁ ବର୍ତ୍ତମାନ ଦେଖାଇଦେବି ।

ଘର ଭିତରକୁ ଯାଇ ଗୁଡ଼ାକାଯାଇ ସୁର ପ ଅଣ୍ଟା ଥାଳିଆରେ କିଛି କାଜୁବାଦାମ ନେଇଆସିଲେ । ସମସ୍ତେ ପାଟିରେ ପୂରାଇ ଗୋଟିବାଅ ବୋଲି କହିଦେଇ ବୁଝାଇଲେ - ଇଏ ତ ଟିକିଏ ଟାଣ ଜିନିଷ । ଗୋଟିବାଇ ଏହାକୁ ଗୁଣ୍ଡଳ ପିଠୋଉ ଭଳି ପାଟିରେ କରି ଦିଅ—ତା' ପରେ ଚିନ୍ତିବ ଜାଣିପାରିବ—ଲକ୍ଷ୍ୟ କରିବ, ଜିଭ କେତେ ଥର କେତେ ପ୍ରକାରର ବାହାଦୁରୀ ଦେଖାଉଛି ।

ଶୀଘ୍ର ଶୀଘ୍ର କେମିତି କଥାଟା ସରିଯିବ ସେଥିପାଇଁ ଅଜା ବ୍ୟସ୍ତ—ସେତିକିବେଳେ କପିଳ ପଶିଆସିଲା ଗୋଟାଏ ବଡ଼ ପ୍ଲାଷ୍ଟିକ୍ ଥାଳୀ ହାତରେ ଧରି । ଭଉଜବୋଉ କହିଥିଲେ ପିଲଙ୍କ ପାଇଁ କିଛି ଆଗୁର

କରୁଛି ଖଣ୍ଟା ଆଣିବା ପାଇଁ । ଆଜ ପାମ୍ପସଠାରୁ ଆରମ୍ଭ କରି ରସାବଳୀ ପର୍ଯ୍ୟନ୍ତ ଅନେକ ପ୍ରକାରର କେତେ ମିଠା ଚିଜ ତିଆରି ହୋଇଛି । କ କ ଖଣ୍ଟା ଆଣିଛୁ ବୋଲି ନନ୍ଦବାବୁ ପଚାରି ଦେଲାରୁ ସେ ଥାଳୀଟିକୁ ଖୋଲ କରିଦେଲା । ପାଞ୍ଚ ଛ' ରକମର ଆଗ୍ରୁର ଆମ୍ବୁଲ ଦେଖି ସମସ୍ତେ ଖୁସି ।

ହରି ବାବୁ ଟିକିଏ ଅଧୈର୍ଯ୍ୟ ସ୍ୱରରେ କହିଲେ—"ସେ ଦ୍ୱାର ବାଟେ ନେଇ ପାରିଲୁ ନାହିଁ—ଏଇ ବାଟେ ଆଣିବାକୁ ଥିଲା ? ଦେଖୁଛୁ ଚଗ ସାତଟା ପଇଁତ୍ରିଶ ହୋଇଗଲାଣି—ଆଉ ପନ୍ଦର ମିନଟ୍ କ ଅଧ ଘଣ୍ଟାରେ ଗପଟି ଶେଷ କରିବାକୁ ହେବ । ସବୁ ପିଲାଙ୍କ ମନ ତ ଯାଇ ସେଇ ଆଗ୍ରୁର ଥାଳି ଦେହରେ ।

ଏଥର ଶୁଣ । ପାଟିରେ ମୁଢ଼ି, ଚଡ଼ା କ ରୁଟି ପଶିଲା ପରେ ଦାନ୍ତ ସିନା ଚୋବାଇବ, ଜିଭ ତାକୁ ସାହାଯ୍ୟ କରିବ ବା ତାଳୁରେ ଚୁପି ବାଟିଲା ଭଳି କରିବ—ସେଥିପାଇଁ ତ ପାଣି ଦରକାର, ନହେଲେ ସେହି କାମ ହେବ କିପରି ? ସେଥିପାଇଁ ସେହି ପାଟି ଭିତରେ ତିନୋଟି ବଡ଼ ଲାଳ ତିଆରି ମେସି ଖଞ୍ଜି ଦିଆଯାଇଛି । ଗୋଟିଏ ଚିହ୍ନ ଟାଙ୍ଗି ଦେଉଛି



ଦେଖ । କାନ ତଳକୁ କପାଫୁଟ ଭଳି ଯେଉଁଟି ଦେଖାଯାଉଛି, ତାକୁ ଲକ୍ଷ୍ୟ କର । ୧୩ ନମ୍ବର ପାଖରୁ ସେଇଟିକୁ ଗୋଟିଏ ଗାର ଟଣା ହୋଇଛି । ତାପରେ ଜଭଟିକୁ ଦେଖ—ଯେଉଁଠାକୁ ୨ରୁ ଗାର ଟଣା ହୋଇଛି—ଉପର ପାଟି ଦାନ୍ତର ତଳେ । ସେହି ଜଭ ମୂଳର ଠିକ୍ ତଳକୁ ଗୋଟିଏ ଛୋଟ କପାଫୁଟ ଭଳି କ'ଣ ଦେଖୁଛ । ୭ରୁ ସେଠିକି ଗାର ଟଣା ହୋଇଛି । ଆଉ ଗୋଟିଏ ସେମିତିକା ରହିଛି ହନୁ ହାଡ ତଳେ । ୧୦ରୁ ସେଇଠିକି ଗାର ଟାଣି ଦିଆ ହୋଇଛି । ସେହି ତିନୋଟିକୁ କୁହାଯାଏ ଲାଳ ତିଆରି ମେସିନ୍ ବା ଗ୍ଲାଣ୍ଡ୍ । ତାହାର ଅନ୍ୟ ନାମ ହେଲା ଲାଳଗ୍ରନ୍ଥି । ଇଂରାଜୀରେ ଲାଳକୁ ସାଲାଇଭା ବୋଲି କୁହା-ଯାଉଥିବାରୁ ଡାକ୍ତରୀ ପିଲାମାନେ ଏହି ତିନୋଟିକୁ "ସାଲଭାରୀ ଗ୍ଲାଣ୍ଡ୍" ବୋଲି କୁହନ୍ତି । ରହିବା ସ୍ଥାନ ଅନୁସାରେ ସେଗୁଡ଼ିକୁ ନାମ ଦିଆଯାଇଛି । କାନ ତଳେ ଯେଉଁଟି ଅଛି ତା' ନା 'କର୍ଣ୍ଣମୂଳ ଗ୍ରନ୍ଥି' (ପାରୋଟିଡ) । ଜଭ ତଳେ ଥିବାରୁ 'ଅଧୋଜିହ୍ୱ' (ସବଲିଙ୍ଗୁଆଲ) । ଲିଙ୍ଗୁଆ ମାନେ ଜଭ ବୋଲି ଆଗରୁ କହିଛି—'ସବ୍' ମାନେ ତଳ । ଆଉଟି ହେଲା 'ଅଧୋହନୁ' (ସବ୍‌ମାଣ୍ଡିବୁଲାର) ତଳ ମାଢ଼ି ତଳେ । ଏହି ଗୁଡ଼ିକରୁ ଲାଳ ପାଟି ଭିତରକୁ ଆସି ଖାଦ୍ୟକୁ ଓଦା କରି ଦେଉଥାଏ—ତେଣୁ ଦାନ୍ତ ଓ ଜଭଙ୍କ ପକ୍ଷରେ ବାଟି ପେଷି ଚକଟଣ କରିବା ସହଜ ହୋଇ ଯାଏ । ଏଗୁଡ଼ିକ ଭିତରେ ସବୁଠାରୁ ବଡ଼ ହେଉଛି "କର୍ଣ୍ଣ ମଳ"ଟି—ପ୍ରାୟ ୫ ସେଣ୍ଟିମିଟର ଲମ୍ବ ଓ ୨୫ ଗ୍ରାମ୍ ଓଜନ । ତା' ତଳକୁ ଅଧୋହନୁ ଓ ସବୁଠାରୁ ଛୋଟ ହେଲା ଅଧୋଜିହ୍ୱ । ଦୁଇପ୍ରକାରର ଲାଳ ବାହାରେ—ଗୋଟିଏ ହେଲା ଟିକିଏ ବହଳିଆ ବା ଲାଳୁଆ, ଅନ୍ୟଟି ଟିକିଏ ପାଣିଆ । ଏହି ତିନୋଟି ବଡ଼ ବଡ଼ଙ୍କ ବାଦେ ଆଉ କେତୋଟି ଖୁବ୍ ଛୋଟ ଛୋଟ ଲାଳଗ୍ରନ୍ଥି ଜଭରେ, ଟନ୍‌ସିଲ ଦେହରେ ବା ପାଖରେ ଓ ନରମ ତାଳୁରେ ମଧ୍ୟ ରହି ଲାଳ ଯୋଗାଉଛନ୍ତି । ଏହିମାନଙ୍କ ଯୋଗୁଁ ଆମ ପାଟି ଭିତରଟା ସବୁବେଳେ ଓଦାଳିଆ ଥାଏ । ପାଟି ବା ମୁଖଗହ୍ୱର ଭିତରେ ଓଠ ଠାରୁ ଆରମ୍ଭ କରି ଗଳା ପର୍ଯ୍ୟନ୍ତ ଏହି ଛୋଟ ଛୋଟ ଗ୍ରନ୍ଥି ବହୁ ସଂଖ୍ୟାରେ ଥାଆନ୍ତି ।

ଲାଳ ତିଆରି କରିବା ପାଇଁ ଏଭଳି ସୁନ୍ଦର ବ୍ୟବସ୍ଥା କରିବାରେ ପ୍ରକୃତିର ଯେତେ ବାହାଦୁରୀ ନାହିଁ—ଅସଲ ବାହାଦୁରୀ ଅଛି ସେଗୁଡ଼ିକୁ ସେ ଯେମିତି ଚମତ୍କାର ଭାବରେ କଣ୍ଟକଣାରେ ରଖିଛି । ଶୁଖିଲା ଖାଦ୍ୟ ପାଟିରେ ପଶିଲେ ବେଶୀ ପରିମାଣରେ ଲାଳ ବାହାରିବ—ଓଦାଳିଆ ଖାଦ୍ୟ ପଶିଲେ ଅଳ୍ପ ବାହାରିବ—କାରଣ ବେଶୀ ପରିମାଣରେ ଦରକାର ହେବ ନାହିଁ । କେତେ ବାହାରିବ—ଲାକୁଆ କି ପାଣିଆ କିସମ ବାହାରିବ ଇତ୍ୟାଦି ଠିକ୍ କରିଦେଉଛି ଆମ ମସ୍ତିଷ୍କ । ସେଇଠୁ ଅତି ଚମତ୍କାର ଭାବରେ ଲାଳଗ୍ରନ୍ଥି ପାଖକୁ ହୁକୁମ ସବୁ ଆସୁଛି । ସେଇଠାରୁ ସବୁ କିଛି ନିୟନ୍ତ୍ରଣ ହେଉଛି ନର୍ଭ ବା ସ୍ନାୟୁବାର୍ତ୍ତା ଦ୍ୱାରା । ଆମ୍ବୁର ଦେଖିଦେଲା ମାତ୍ରେ ଆମ ପାଟି ଲାଳେଇ ଯାଏ । ସତ କହିଲ, କପିଳ ଯେତେବେଳେ ଆମ୍ବୁର ଥାଳୀ ଦେଖାଇଦେଲା, ତୁମମାନଙ୍କ ପାଟି ଲାଳେଇ ଗଲାନାହିଁ ?

ମିଛା ମାନିଗଲା ସେ ଆମ୍ବୁର କଥା ଶୁଣୁ ଶୁଣୁ ତା' ପାଟିରୁ ଲାଳ ଖସି ପଡ଼ିଲା ଭଳି ହୋଇଗଲା ।

ଜୀବର ଅଜାଣତରେ ଲାଳ ବାହାରିବା ନ ବାହାରିବା କଣ୍ଟକଣା ସୁନ୍ଦରଭାବରେ କାମ କରିଯାଉଛି । ଯେଉଁ ଜୀବଗୁଡ଼ିକ ଓଦା ବା ଓଦାଳିଆ ଖାଦ୍ୟହିଁ ଖାଆନ୍ତି, ସେମାନଙ୍କ ପାଟି ଭିତରକୁ ଲାଳ ଆସିବା ଆଉ ଏତେ ଦରକାର କଅଣ ? ମାଛ ପାଟି ଭିତରେ ଲାଳଗ୍ରନ୍ଥି ନାହିଁ । ତିମି, ସିଲ୍ ଓ ପାଣି-ପକ୍ଷୀଙ୍କ ପାଟିରେ ଥିଲେ ମଧ୍ୟ କାଳକ୍ରମେ ସେଗୁଡ଼ିକ ଅକାମୀ ହୋଇଗଲେଣି । କିନ୍ତୁ ଯେଉଁ ସବୁ ପକ୍ଷୀ ଶସ୍ୟ ଦାନା ଖାଇ ବଞ୍ଚନ୍ତି, ସେମାନଙ୍କ ଲାଳଗ୍ରନ୍ଥି ବେଶ୍ ପୁଷ୍ଟ ହୋଇଥାଏ—ଖୁବ୍ ଭଲ କାମ କରୁଥାଏ । ଗାଈ ଯଦି ତଟକା ଘାସ ଖାଉଥିବ ତା ପାଟିରେ ଯେତିକି ଲାଳ ଝରିବ, ଶୁଖିଲା କୁଟା ଛଣ ଖାଇଲେ ତାର ଚାରି ଗୁଣ ଝରିବ ।

ଗୋଟିଏ ଡାକ୍ତରୀ ବହିରୁ ତୁମକୁ ସବୁ ଦୁଇଟି ଚିତ୍ର ଦେଖାଇ ଦେଉଛି । ପ୍ରଥମଟିରେ ଦେଖ ଜଣକ ଆଗରେ ଗୋଟିଏ ଲେମ୍ବୁ ଆମ୍ବୁର ଥୁଆହୋଇଛି । ତାକୁ ଦେଖିଦେଲା ମାତ୍ରେ ଖଟା କଥାଟା ମନ ଭିତରକୁ



ଖଟା ଦେଖିଲେ ଲାଳ ଗଡ଼େ :



ଉଃ ! କି ମିଠା :

ଆସିପାରୁଛି । ପାଟି ଭିତରେ ଲାଳ ଜମିଗଲାଣି । କିନ୍ତୁ ସେ ଲାଳ ଆସୁଛି କାନ ମୂଳରେ ଯେଉଁ ଗ୍ରନ୍ଥି ଅଛି ସେଇଥିରୁ । ସେ ଗ୍ରନ୍ଥି ବା ଗ୍ଲାଣ୍ଡରୁ ପାଣିଆ ଲାଳ ଝରେ । ଖଟା ସାଙ୍ଗରେ ଟିକିଏ ପାଣି ଗୋଳାଇ ନଦେଲେ ଗିଳିବାକୁ ସୁବିଧା ହେବନାହିଁ —ସୁଆଦଟା ମଧ୍ୟ ମାଲୁମ ହେବ ନାହିଁ । ସେତେବେଳେ କିଭି ତଳ ଗ୍ରନ୍ଥି କାମ କରୁନାହିଁ । ଆଉ ଜଣକ ଆଗରେ ଥୁଆ ହୋଇଛି ମିଠା ଚିଜ କ ଗଦଗଡ଼ ଭଜିଆ କିଛି । ସେତେବେଳେ କିଭି ତଳ ଗ୍ରନ୍ଥିରୁ ଲାଳ ଝରୁଛି । ଏହି ଲାଳ ଟିକିଏ ଅଠାଳିଆ— ପ୍ରଥମଟି ଭଳି ପାଣିଆ ନୁହେଁ ।

ବିଜୁ ଖୁବ୍ ମନ ଦେଇ ଶୁଣୁଥିଲା । ତା ମନ ଭିତରେ ଗୋଟିଏ ପ୍ରଶ୍ନ ଉଠୁଥାଏ । ତାହାର ଉତ୍ତର ସେ ପାଉନଥାଏ । ତେଣୁ ଟିକିଏ ସଙ୍କୋଚ କରି ପଚାରିଦେଲା—ଖାଇଲା ବେଳେ ଟିକିଏ ପାଣି ପିଇ-ଦେଲେ ତ ସବୁ ଓଦା ହୋଇଯା'ନ୍ତା, ଏତେ 'ଲାଳ ମେସିନ' ତିଆରି କରିବା କ'ଣ ବା ଦରକାର ଥିଲା ?

ଅଜା ଦେଖିଲେ ଯେ ସେ ଅସଲ ପଏଣ୍ଟଟି ଭୁଲି ଯାଉଥିଲେ । ଏମିତିକା ପ୍ରଶ୍ନ ପଚାରିଲେ ସିନା ସବୁ କଥା ଭଲରେ ବୁଝି ହୁଏ ବୋଲି କହି ବିଜୁ ଆଡ଼କୁ ଚାହିଁ ଦେଲେ ଓ ଆରମ୍ଭ କଲେ—ଲାଳ କେବଳ ପାଣି କାମ କରେନାହିଁ, ହଜମ କାମ ମଧ୍ୟ କରେ । ତୁମକୁ ସବୁ ଆଗରୁ କହିଛି ଖାଦ୍ୟରେ ହଜମ ରସ ମିଶିଲେ ଯାଇ ସେଥିର ସାର ବାହାରିବ ଓ ରକ୍ତରେ ମିଶିବ । ଲାଳ ଦେହରେ ସେହି ହଜମ ରସ ମିଶିଛି । ଗୋଟିଏ କଥା ମନେ ପକାଇଦେଲେ ତୁମେମାନେ ସମସ୍ତେ କଥାଟା ବୁଝିପାରିବ । ପାଟିରେ ଶୁଖିଲା ଚୂଡ଼ା ପକାଇଲା ବେଳେ କିଛି ସୁଆଦ ନଥାଏ । କିଛି ସମୟ ଚୋବାଇଲା ପରେ ସେଥିରୁ ମିଠା ବାହାରେ । ଲାଳ ଭିତରେ ଥିବା ଗୋଟିଏ ହଜମ ରସ ଚୂଡ଼ାକୁ ହଜମ କରି ଗୋଟାଏ ରକମ ଚିନି ରୂପ ଦେଇଦେଲା । ପ୍ରଥମେ ଚୋବାଇଲାବେଳେ ତାହା ଅଠାଭଳି ହୋଇଯାଏ । ଏହି ଅଠା ହେବାଟା ମଧ୍ୟ ଗୋଟାଏପ୍ରକାର ହଜମ । ମନେ ରଖିଥାଅ— ପାଟି ଭିତରେ ଯଦି ଚୂଡ଼ା ସାଙ୍ଗରେ ଭଲ ଭାବରେ ଲାଳ ନ ମିଶିଲା ଓ ସେତିକି ପେଟକୁ ଚାଲିଗଲା; ପେଟ ଭିତରେ ଭଲ କରି ହଜମ ହେବ

ନାହିଁ । କାରଣ ଲାଳ ଭିତରେ ଯେଉଁ ପ୍ରକାର ହଜମ ରସ ଥାଏ, ପେଟ ଭିତରେ ଆଉ ସେହି ପ୍ରକାର ହଜମ ରସ ଝରେନାହିଁ । ପ୍ରକୃତ ହଜମ କ୍ରିୟା କ'ଣ ତାହାର ପ୍ରମାଣ ଅମେ ଚୂଡ଼ା ରୁଟି ଗ୍ରେବାଇଲ ବେଳେ ପାଇ ଯାଉଛୁ । ପାଟି ଭିତରେ ଯେଉଁ ହଜମ କାମ ଆରମ୍ଭ ହେଲା ତାହା ପେଟ ଭିତରେ ଯାଇ ପୂରା ହେଉଛି ଓ ଏହି ଚୂଡ଼ା, ରୁଟି ବା ଭାତର ରସ ଗ୍ଲୁକୋଜ ରୂପରେ ରକ୍ତରେ ମିଶିଯାଉଛି ।

ସେତେବେଳକୁ ବାବୁଙ୍କ ପେଟ ଯେପରିକ ଉଠିଲା ପଡ଼ିଲା ଭଲ ହେଲାଣି । କ'ଣ ଗୋଟାଏ ପଚାରୁ ଆସୁଥିଲା । ଅଜା ତାଙ୍କୁ ହାତ ଠାରି ବସାଇଦେଇ କହିଲେ—ମୁଁ ବୁଝି ପାରୁଛି, ତୁ କ'ଣ ପଚାରିବାକୁ ଯାଉଛୁ । ସେଥିପାଇଁ ଆଉ ଦିନେ ବସିବା ଆଜ ଠିକେ ଠିକେ କେତେ କଥା କହିଦିଏ ।

କଣ ଟିକିଏ ଉଣ୍ଡାଳିଲା ଭଳି ହୋଇ ରବିକୁ ଡାକ ପକାଇଲେ । ରବି ନଥିବାରୁ ନାରଣ ଆସି ପହଞ୍ଚିଲା । ତାଙ୍କୁ କହିଲେ—ମାଆଙ୍କ ପାଖରୁ ଚାବି ନେନ୍ଥାଟା ନେଇଆ । ସେ ସଙ୍ଗେ ସଙ୍ଗେ ନେଇ ଆସିଲାରୁ ପିଲାଙ୍କୁ ଦେଖାଇ ପଚାରିଲେ—ଏତେ ରକମର ଚାବି କାହିଁକି ଅଛି କହିଲ ?

ପିଲାମାନେ ହସିଉଠିଲେ । ଗୋଟାଏ ଗୋଟାଏ କୋଲପ ପାଇଁ ଗୋଟିଏ ଗୋଟିଏ ଚାବି ବୋଲି କିଏ ନଜାଣେ ଯେ, ଏଭଳି ପ୍ରଶ୍ନ ପଚରା-ଯାଉଛି । ଅଜା ମଧ୍ୟ ସେମାନଙ୍କ ସହିତ ଟିକିଏ ହସିଦେଇ ଆରମ୍ଭକଲେ—ଉତ୍ତରଟା ଯେତେ ସହଜ ବୋଲି ଭାବୁଛ ପ୍ରକୃତରେ ସେତେ ସହଜ ନୁହେଁ । ଯଦି ସେମିତ ହୋଇଥାନ୍ତା ହଜମ କ'ଣ—ଏକଥା ବୁଝାଇବା ପାଇଁ ଏତେ ବହି କାହିଁକି ଲେଖାହୋଇଥାଆନ୍ତା ? ଆମେ କେତେ କିସମର ଖାଦ୍ୟ ଖାଉଛୁ । ପ୍ରତ୍ୟେକଟିକୁ ହଜମ କରିବା ପାଇଁ ଗୋଟିଏ ଲେଖା ସ୍ୱତନ୍ତ୍ର ରସ ରହିଛି । ତୁମେତ ଦେଖୁଛ ଗୋଟିଏ କୋଲପପାଇଁ ଗୋଟିଏ ଚାବି । ଭାତ ଓ ରୁଟି ହଜମ କରିବ ଗୋଟିଏ ରସତ ଛେନା, ମାଛ, ମାଂସ ହଜମ କରିବ ଆଉ ଗୋଟିଏ ରସ । ତେଲ ଓ ଘିଅ ଟବେଳକୁ ଆଉ ଗୋଟିଏ ରସ ଆସିଗଲା । ଡାକ୍ତର ବଇଦଙ୍କ ପାଖକୁ ଆମେ ଯେତେବେଳେ ଯାଇ

କିନ୍ତୁ ଆମର ହଜମ ହେଉନାହିଁ, ସେ ନାନା ରକମ ପରୀକ୍ଷା କରି ଦେଖନ୍ତି ପ୍ରକୃତରେ କେଉଁ ଜାତିର ଖାଦ୍ୟଟା ଆମର ହଜମ ହେଉନାହିଁ । ତାହା ଜାଣିଲା ପରେ ଯାଇ ସେହି ଅନୁସାରେ ଔଷଦ ବିଧାନ କରନ୍ତି । ଗୃହ ହଜୁଛି ବୋଲି କହିଲେ ଜଣେ ଯେ କୌଣସି ଗୃହଟାଏ ଦେଇଦେଲେ ତ କୋଲପ ଫିଟିଯିବ ନାହିଁ । କୋଲପଟି କେମିତିକା ତାହା ଜାଣିଲେ ଯାଇ ସେହି ଅନୁସାରେ ଗୃହଟିଏ ଦେବ । ତୁମେ ଶୁଣିଥିବ, ଥରେ ଥରେ ଡାକ୍ତରମାନେ କୁହନ୍ତି କଚ୍ଛୁବନ ପାଇଁ ଘିଅ, ତେଲ ଖାଅନାହିଁ । ଏହି ଜାତୀୟ ଖାଦ୍ୟକୁ ହଜମ କରିବାପାଇଁ ଯେଉଁ ରସ ହଜମ କାରଖାନାରେ ଝରିବାର କଥା, ସେହି ରସ ଝରୁନାହିଁ । ଔଷଧ ଦେଇ, ଅନ୍ୟ ଉପାୟ କରି ସେ ରସ ଝରାଇଲେ ଯାଇ ପୁଣି ଘିଅ ତେଲ ଖାଇବାକୁ କହିବେ ।

ବରାବର ଖାଇବା କଥା ପଡ଼ୁଥିବାରୁ ସତେ ଯେପରିକି ପିଲାଙ୍କ ଭୋକ ଆଜ ଉଦ୍ରେକ କରୁନାହିଁ । ଶୀଘ୍ର ଶୀଘ୍ର ବଡ଼ାହେଇ ଯାଆନ୍ତା କି ବୋଲି ଯେଉଁ ନନ୍ଦବାବୁ ଠାରୁଥିଲେ ସେ ମଧ୍ୟ ମନଦେଇ ଶୁଣିବାକୁ ଆରମ୍ଭ କଲେଣି । କିନ୍ତୁ ହରି ବାବୁ ସମସ୍ତଙ୍କୁ ଶୁଣାଇ ଦେଲେ ଯେ ଅତି ଶୀଘ୍ର ସେ ଆଜିର ବୈଠକ ଶେଷକରି ଦେଉଛନ୍ତି । କେବଳ ଛବି କେତୋଟି ଦେଖାଇ ଦେବେ ।

ପ୍ରଥମେ ବାହାର କଲେ, ଉପରୁ ତଳ ତଳକୁ ମୁହଁ କରି ପିଲାଟିଏ କେମିତି ଚେହେନା.ଗଜା ଖାଇଯାଉଛି (ଚିତ୍ରଟି ପ୍ରଥମ ପୃଷ୍ଠାରେ ଦେଖ) । ସମସ୍ତେ ଚିତ୍ରଟିକୁ ଅନାଇ ଟିକିଏ ହସିଲେ । ସେ ବୁଝାଇଲେ—ଗଳାରୁ ଖାଦ୍ୟ ତଳକୁ ପେଟଆଡ଼କୁ ଚାଲିବେଳେ ପ୍ରକୃତରେ ଗଳପଡ଼େ ନାହିଁ । ତାକୁ ଧୀରେ ଧୀରେ ଆମେ ଗିଳୁ । ସେଇଥିପାଇଁ ଗଳା ପାଖରୁ ପେଟଯାଏ ଯେଉଁ ନଳୀଟି ଅଛି, ସେଇଟି ଏମିତି ତିଆରି ହୋଇଛି ଯେ ଖାଦ୍ୟକୁ ଠେଲି ଠେଲି ଖସାଇଲା ଭଳି କରେ । ତାହା ନ ହୋଇଥିଲେ ଏହି ପିଲା ତଳକୁ ମୁହଁ କରି ଉପରକୁ ଗିଳୁଥାଆନ୍ତା କିପରି ? ଗାଈ ବା ବଳଦ ମୁହଁ ତଳକୁ କରି ଖାଏ । ତା ପେଟ କେତେ ଉପରେ ଥାଏ । ଖାଦ୍ୟ ପୁଣି ବେକରେ ଉଠି ଉଠି କେମିତି ଯାଏ ? ଜିରାଫ୍‌ର ବେକ କେତେ ଲମ୍ବ । ସେ ତଳୁ ଖାଇଲାବେଳେ ତା ପାଟିରୁ ପେଟ ପର୍ଯ୍ୟନ୍ତ ଖାଦ୍ୟ କେତେ ଉପରକୁ ଉଠେ ଅନୁମାନ କର । ଆମେ ତରତର ହୋଇ

ଗୁଣ୍ଡାକ ପରେ ଗୁଣ୍ଡାଏ ଖାଇଦେଲେ ଗ୍ରୁଣ୍ଡରେ ଲଟିଲା ଭଳି କେମିତି ହୋଇଯାଏ ସମସ୍ତେ ଜାଣିଥିବ ।

ତାହାପରେ ସେ ଦେଖାଇଲେ ଆଉ ଗୋଟିଏ ଛବି । ଗଳାରୁ ଖାଦ୍ୟ ନଳୀ ଗ୍ରୁଣ୍ଡ ଭିତର ଦେଇ ଯାଇ ପେଟ ଭିତରେ ପଶିଛି । ସମସ୍ତଙ୍କୁ କହିଲେ, ଗ୍ରୁଣ୍ଡରେ ହାତ ମାର । ପେଟ ଉପରେ ଓ ଗ୍ରୁଣ୍ଡ ତଳେ ଗୋଟାଏ ମଜବୁତ୍ ମାଂସ ପରଦା ଝିଲ୍ଲି ଭଳି ରହିଛି, ସେହି ଝିଲ୍ଲି ଉପରେ ଫୁସ୍‌ଫୁସ୍; ତଳେ ପାକସ୍ଥଳୀ ଓ ଅନ୍ତ୍ର । ମାଂସପେଶୀର ଏହି ଝିଲ୍ଲିଟିର ନାମ ହେଉଛି 'ମଧ୍ୟଚ୍ଛଦା' । ଆମ ଗ୍ରୁଣ୍ଡ ଭିତରେ ଯେତେବେଳେ ପବନ ପଶେ, ସେହି ଝିଲ୍ଲି ଟିକିଏ ତଳକୁ ହୋଇଯାଇ ପେଟ ଉପରେ ଚାପ ପକାଏ । ପେଟେ ଖାଇଦେଲେ ସେହି ଝିଲ୍ଲି ଉଠିଲା ଭଳି ରହି ନିଃଶ୍ୱାସ ନେବା ଆଣିବା କାମରେ ଟିକିଏ ବାଧା ଦେଇଥାଏ । ପେଟ ଯଦି ଫମ୍ପେଇ ହୁଏ, ଏହି ଝିଲ୍ଲି ଉପରକୁ ଉଠି ଫୁସ୍‌ଫୁସ ଉପରେ ଏଭଳି ଚାପ ପକାଏ ଯେ, ଆମକୁ ଅଣନିଃଶ୍ୱାସୀ ହୋଇଗଲା ଭଳି ଲାଗେ ।



ଉପରୁ ଖାଦ୍ୟ ନଳୀ ଆସି ପଡ଼ିଛି ବା ମିଶିଛି ପାକସ୍ଥଳୀ ଦେହରେ । ଆମ ପେଟର ଠିକ୍ ବାମ ପଟକୁ ଏହି ପାକସ୍ଥଳୀଟି ରହିଛି । ତା'ହାର ରୂପ ବା ଆକୃତି କେମିତି ତାହା ଚିତ୍ରରୁ ଜାଣିପାରିବ । ଉପର ଅଂଶରେ ଯେଉଁ ନଳୀଟି ରହିଛି, ସେହି ବାଟେ ପାକସ୍ଥଳୀକୁ ଖାଦ୍ୟ ପ୍ରବେଶ କରେ । ଏହି ରୂପ ବା ଆକୃତି ଦେଖି ଭାବିବା ଦରକାର ନାହିଁ ଯେ, ସମସ୍ତଙ୍କ ପାକସ୍ଥଳୀ ଠିକ୍ ଏହିଭଳି ହୋଇଥିବ । ଏଥିରେ ସାମାନ୍ୟ ପରିବର୍ତ୍ତନ ମଧ୍ୟ ଦେଖାଯାଏ । 'ପାକସ୍ଥଳୀର ଭିନ୍ନ ଭିନ୍ନ ରୂପ' ଚିତ୍ର ଦେଖ । ହଜମ କ୍ରିୟା ଉପରେ ଏହି ଆକୃତିର ମଧ୍ୟ ସାମାନ୍ୟ ପ୍ରଭାବ ରହିଛି । ସେ ବିଷୟରେ ଆଉ ଥରେ କହିବି । 'ପାକସ୍ଥଳୀ' ଚିତ୍ରରେ ଯେଉଁଠି 'ଙ୍କ'




ପାକସ୍ଥଳୀ







ପାକସ୍ଥଳୀର ଭିନ୍ନ ଭିନ୍ନ ରୂପ

ବୋଲି ଲେଖାହୋଇଛି, ଖାଦ୍ୟ ଆସି ପ୍ରଥମେ ସେଇଠି ପହଞ୍ଚୁଯାଏ । ତଳ ଅଂଶରେ ଗୋଟିଏ ଗୋଲେଇ ହୋଇ ତା ଭିତରେ 'ଗ' ବୋଲି ଲେଖାଯାଇଛି । ଖାଦ୍ୟ ନଳୀରୁ ପାକସ୍ଥଳୀକୁ ସହଜରେ ଗଡ଼ି ଗୁଳି ଆସିଲା । ସେମିତି ସହଜରେ 'ଗ' ବାଟେ ତଳକୁ ଅନ୍ତ ଆଡ଼କୁ ଖସିଯିବ ବୋଲି ବିଚାରିଥିବ । କିନ୍ତୁ ପ୍ରକୃତରେ ତାହା ହୁଏ ନାହିଁ । ଯେଉଁଠି 'ଗ' ଲେଖାଯାଇଛି, ସେଇଟି ହେଲା ଅନ୍ତ ଭିତରକୁ ପ୍ରବେଶ ଦ୍ୱାର ବା କବାଟ । ତାକୁ ଡାକ୍ତରମାନେ 'ଜଠର ନିର୍ଗମ ବା 'ପାଇଲୋରସ୍' ବୋଲି କୁହନ୍ତି । 'ଜଠର' ଶବ୍ଦର ଅର୍ଥ ପେଟ ବୋଲି ଜାଣିଥିବ । ସେଥିରୁ ଯେଉଁ ବାଟେ ଖାଦ୍ୟ ତଳକୁ ଯାଏ ବୋଲି ଏହା ଏପରି ନାମ ପାଇଛି । କିନ୍ତୁ ସେହି ଦ୍ୱାରକୁ ଗୋଟିଏ ମାଂସପେଶୀ କବାଟ ବନ୍ଦ କରି ରଖିଛି । ସେହି କବାଟର ନାମ ହେଉଛି 'ଜଠର ନିର୍ଗମ ସମ୍ବରଣୀ' (ପାଇଲୋରିକ ସ୍ପିଙ୍କ୍ ଟର୍) ଏଭଳି କବାଟ ଖଞ୍ଜିବାର ଉଦ୍ଦେଶ୍ୟ ହେଉଛି ପାକସ୍ଥଳୀ ଭିତରେ ଖାଦ୍ୟ କିଛି ସମୟ ରହିବା ଦରକାର । ସେଠି ତାହାର ମନ୍ଥନ ହେବ । ସେଥିରେ ଅମ୍ଳରସ ମିଶିବ । ତାହା ପରେ ଯାଇ ତାକୁ ଅନ୍ତ ଭିତରକୁ ଛଡ଼ାଯିବ । ଏହି ଅମ୍ଳରସ ନ ମିଶି ଥିଲେ ଅନ୍ତ ତାକୁ ସହଜରେ ହଜମ କରି ପାରିବ ନାହିଁ ।

ହୁନ୍ନଆପା କହି ଉଠିଲେ—ଆରେ ସତରେ କି, ଅପରେ ଖାଇଦେଲେ କେତେ ଘଣ୍ଟା ଯାଏ ଆଉ ଖାଇବାକୁ ଏଇଥି ପାଇଁ ବେ ଧହୁଏ ଇଚ୍ଛା ହୁଏ ନାହିଁ ।

ହରିବାବୁ ଉତ୍ତର ଦେଲେ—ତୁମେ ଠିକ କଥାଟା ଧରିଛ । ଏହି ହଜମରସ ମିଶିବ ବୋଲି ହଜମ କାରଖାନା ଭିତରେ ଖାଦ୍ୟ ଧୀରେ ଧୀରେ ଗତି କରେ । ଗୋଟିଏ ଚିତ୍ର ଦେଖାଉଛି, ସେଥିରୁ ଜାଣିପାରିବ




ଧୀରେ ଧୀରେ ଗୁଳୁଛି

ଆମେ ଯାହାକୁ ଖାଉଛୁ ତାହା ଆମ ପେଟ ଭିତରେ କେଉଁ ଅଂଶରେ କେତେ ସମୟ ରହି ରହି ଯାଉଛି, ଧୀରେ ଧୀରେ ଗୁଳୁଛି' ଚିତ୍ର ଆମକୁ କହିଦେଉଛି ପେଟ ଭିତରେ ହଜମ ରସ ମିଶାଇ ଖାଦ୍ୟରୁ ସାର କାଢ଼ିବା ପାଇଁ ପ୍ରକୃତି କିଭଳି ଚମତ୍କାର ବ୍ୟବସ୍ଥା କରିଛି ।

ଆରମ୍ଭରୁ ପଛପଟ ଆଗପଟ ଦୁଇଆଡ଼ୁ ପେଟ ଭିତରର ଅନ୍ତ କିଭଳି ଦେଖାଯାଉଛି, ଦୁଇଟି ଚିତ୍ର ଦେଖାଇଥିଲି । ପୃଷ୍ଠା ୧୨ ଓ ୧୩)

ଅନ୍ତକୁ ଯେ ପେଟ ଭିତରେ ଏଭଳି ମୋଡ଼ିମାଡ଼ି ଦେଲାଭଳି ଖଞ୍ଜାଯାଇଛି, ତାହାର କାରଣ ହେଉଛି ଖାଦ୍ୟର ପଥ ଜଟିଳ ହେବା ଉଚିତ। ସିଧାସଳଖ ବା ସରଳ ହେବା ଉଚିତ ନୁହେଁ ବୋଲି ପ୍ରକୃତି ବିଚାରିଲା। ସେହି ଅନ୍ତ ଭିତରେ ଆହୁରି କେତେ ରକମର ବ୍ୟବସ୍ଥା ହୋଇଛି ଆଉ ଥରେ ଭଲକରି ବୁଝେଇ କହିବି। ଆଜି କେବଳ 'ଅନ୍ତ ଭିତରେ କୋଟିକମ' ଚିତ୍ରଟି ଦେଖାଇ ଦେଉଛି।



ଅନ୍ତ ଭିତରେ କୋଟିକମ

ତେଣେ ଘର ଭିତରୁ ଶୁଣା ଯାଉଥାଏ ଥାଳ ସବୁ ଯେମିତିକ ସଜାଡ଼ା ହେଉଛି, ପାଣି ବାଲଟି ରହୁଛି, ଗିଲାସ ଭଲ କରି ଧୋଇଦିଅ ବୋଲି କିଏ କହୁଛି। ଅଜା ପଚାରି ଦେଲେ—ପିଲାଏ ଏଥର ଉଠିବା ?

ଠୁଙ୍ଗ ଯେମିତି କହୁଛି—'ନାଇଁ ନାଇଁ ଆଉ ଟିକିଏ କୁହ', ହରି ବାବୁ ଉଠିଲାଭଳି ସଜ ହୋଇ ମଡ଼ିଲେ ଓ କହିଲେ—ଆଉ ତୁମମାନଙ୍କୁ ବେଶୀ ସମୟ ଅଟକାଇବି ନାହିଁ, କାହିଁକି ନା ମୁଁ ଭଲକରି ବୁଝୁଛି ତୁମ ଭିତରୁ ସମସ୍ତଙ୍କ ପେଟରୁ ହଜମ ରସ ଝରିବଣି। ଏତିକି-ବେଳେ ଯଦି ଖାଦ୍ୟ ଯାଇ ନ ପହୁଞ୍ଚେ, ସେହି ରସଗୁଡ଼ାକ ଅକାରଣ ହୋଇଯିବ। ଖାଲି ଯେ ଅକାରଣ ହେବ ତାହା ନୁହେଁ, ସେଥିରୁ କେତେକ ପେଟ ଭିତରର କ୍ଷତି କରିବ।

ଧନବାବୁଙ୍କ ଭଳି ପୋଖତ ଲୋକ ମଧ୍ୟ କଥାଟାକୁ ଠିକ୍ ଧରି ପାରିଲେ ନାହିଁ। ସେ ପଚାରିଲେ—ପେଟ ଭିତରକୁ ଖାଦ୍ୟ ନ ଗଲେ ମଧ୍ୟ କଅଣ ହଜମ ରସ ଝରିବ ?

ତରତର ହେଉ ହେଉ ହରିବାବୁ ଆଉ ଗୋଟିଏ ଚିତ୍ର କାଢ଼ି ଦେଖାଇ ଦେଲେ। 'ନ ଖାଇଲେ ବି ଝରୁଛି' ଚିତ୍ରଟି ହେଉଛି ଗୋଟିଏ



ନ ଖାଇଲେ ବି ଝରୁଛି

କୁକୁରର। ପାଭଲଭ ବୋଲି ଜଣେ ବିଜ୍ଞାନୀ ପ୍ରଥମେ ଦେଖାଇ ଦେଲେ ଯେ, ଖାଦ୍ୟ ପେଟ ଭିତରେ ଯାଇ ପହଞ୍ଚୁ ବା ନ ପହଞ୍ଚୁ, ମନ ଯଦି ଖାଦ୍ୟ ଦେହରେ ଲାଗିଗଲା ବା ନାକ ଜିଭ ଖାଦ୍ୟର ସୁଆଦ ପାଇଗଲେ, ପେଟ ଭିତରେ ହଜମ ରସ ଝରିଲା। ଚିତ୍ରରେ ଦେଖ—ଏହି କୁକୁରର

ଖାଦ୍ୟ ନଳୀକୁ ବନ୍ଦ କରି ଦେଇ ବାହାରକୁ ବାଟ ଫିଟାଇ ଦିଆଯାଇଛି । ସେ ପାଟିବାଟେ ଯାହା ଖାଉଛି, ତାହା ନଳୀ ପାଖରେ ବାହାରକୁ ଗଳି ପଡ଼ୁଛି; ପେଟ ଭିତରକୁ ମୋଟେ ଯାଉ ନାହିଁ । ତଥାପି ପେଟ ଭିତରେ ହଜମ ରସ ଝରୁଛି । ସେହି ରସକୁ ପେଟ ଭିତରେ ଗୋଟିଏ କଣା କରି ବାହାରକୁ କେମିତି କାଢ଼ି ଅଣାହେଉଛି ଦେଖ ।

ଘନବାବୁ ପଚାରିଲେ—'ତାହାହେଲେ ଏ ହଜମ ରସ ଝରିବାଟା ଜାଣି ମନ ଭିତରର କଥା !' ହରି ବାବୁ ସଙ୍ଗେ ସଙ୍ଗେ କହି ଉଠିଲେ—'ଏଥିରେ ଆଉ ଭୁଲ ଅଛି ? ବାବୁଲୁ ଯେତେବେଳେ ଖାଇ ବସିବ ଗୋଟାଏ ନା ଗୋଟାଏ କିଛି ବାହାର କରି କହିବ, ଏଇଟା



ମନ ଖୁସିରେ



ମନ ଦୁଃଖରେ

ହେଲ୍‌ନାହିଁ, ସେଇଟା ହେଲ୍‌ନାହିଁ । ସେଥିଯୋଗୁଁ ସେ ଯେତେ ଖାଇଲେ ବ ତାହା ଦେହରେ ଲଗୁନାହିଁ । କିନ୍ତୁ ଠୁରି ମନଖୁସିରେ ଖାଇବାଏ ବୋଲି ତାହା ଦେହରେ ବେଶ୍ ଲଗୁଛି । ମନ ଦୁଃଖରେ ଖାଇଲେ ପେଟ ଭିତରେ କେମିତି ହଜମ ରସ କମ୍ ଝରେ ଓ ଖୁସିରେ ଖାଇଲେ କେମିତି ବେଶୀ ଝରେ ତାହା ଚିତ୍ରରୁ ଦେଖ ।’

ଘର ଭିତରୁ ଡାକ ଶୁଭିଲା—ପିଲଗୁଡ଼ାଙ୍କ ପ୍ରତି ତମର ଟିକିଏ ମାୟା ମମତା ନାହିଁ ? ରାତି ଏତେ ହେଲଣି, ସେମାନଙ୍କର ଭୋକ ହୋଇ ପେଟ ଭିତରେ ତ ମଚ ସଢବଣି !

ହରି ବାବୁ ଉଠିଲେ । ଠିଆହୋଇପଡ଼ି କହିଲେ—“ଜୀବନ ତିଆରି କାରଖାନା ଭିତରେ ପ୍ରକୃତି କେମିତି ସବୁ ମେଳକ ଦେଖାଉଛି, ଆଉ ଦିନେ ବୁଝାଇବ । ସେଦିନ ଦେଖିବ ଦୁବଘାସରୁ କିଭଳି କ୍ଷୀର ତିଆରି ହେଉଛି, ଧାନ, ଗହମ, ମୁଗ, ବିରି ଦିନେ କେମିତି ମାଂସ ପାଲଟି ଯାଉଛନ୍ତି । ଆହୁରି ଶୁଣିବ ଛୁଟି ଦିନ ଏଇ ବାବୁଲଟା ସକାଳୁ ସଞ୍ଜଯାଏ କେମିତି ଖାଲି ଖେଳୁଛି, ଦଉଡ଼ୁଛି, ପହଁରୁଛି । ସେସବୁ କରିବାପାଇଁ ତା ଦେହକୁ ବଳ କେଉଁଠୁ ଆସୁଛି ?”

ବସି ବସି ଘନବାବୁଙ୍କ ଅଣ୍ଟା ଲାଗଗଲା ଭଳି ହୋଇ ଯାଇଥିଲା । ସେ ଅଣ୍ଟା ସିଧାକରି କହିଲେ—“ମୋର ଗୋଟିଏ ଅନୁରୋଧ—ସେଦିନ ଆମ ଘରେ ବୈଠକଟା ବସୁ । ଏଇ ପିଲାଯାକ ସମସ୍ତେ ଯିବେ । ଆମ ସାଇ ପିଲା ବି ଆସିବେ ।”

ପିଲାମାନେ ଏକାବେଳକେ କହିଉଠିଲେ—“ହିଁ ଆମେ ସମସ୍ତେ ସେଦିନ ଯିବୁ ।”